ଗୀତଂ । ରାଗ କାମୋଦ । ଆଡ ତାଳ ॥
(ଧୃତାଙ୍କ ଧୟେକେନ୍ଦ୍ର ରହିବ ଗୋ । ପଦ)
ତ୍ରତକୁ ଆଚରଣ କରିଜନେ ।
ଛତପନକୁ ହୋଇ ପଡ଼ିଲ ସକଳେ ।
ଅପରାଧ ତୁମ୍ଭର । କୋହଲ୍ଲକ ଗୋଚର ।-
ବରନା ମାନେ ଏହାନନ୍ତେ କର ॥ ୧ ॥
ଦେବଙ୍କାରେ ଅପରାଧ ତୁମ୍ଭର ।
ହେଲା ଉଦ୍ଧି କ ତୁମ୍ଭେ ପ୍ରାୟଶ୍ଚିତ୍ତକର ।
ସେ ପାପବନାଶନ । ହେଉକଛନ୍ତି ଜାଣ ।
ଯୁଡ଼ିକରେ ନମସ୍କାର କର ॥ ୨ ॥
ଶିରରେ ଯୁଗଳ କରକୁ ଦେଇ ।
ନମସ୍କାର କରଗୋ ବନତକ ହୋଇ ।
ସକଳେ ହୋଇ ଠୁଳ । ଆସ ଯେ ଯାହ୍ନ ତେଳ ।
ନଯ୍ୟ ହୃଦରେ ନକର ଘାତକ ॥ ୩ ॥

—...—

ଶ୍ଲୋକଃ । ଇଯତ୍ର୍ୟତୋନାଭିହିତଂବ୍ରଜାବଳାମଦ୍ୟାବ୍ରତସ୍ଥାପ୍ଲବନଂ ବନଚ୍ୟତଂ ।
ତସ୍ତ୍ରିକାମାସ୍ତୁଦଶେଷକର୍ମଣାଂସାକ୍ଷାତ୍କୃତଂନେମୁରବଦ୍ୟମୃଡ୍ଢଃ ॥
ଗୀତଂ । ରାଗ ଆହ ତାଳ ॥
(ଜହ୍ନାର ସେ ମୋହନ ପ୍ରୀତକ । ପଦ)
କହିଲେ ଏପରିକେର ନାଗର ॥ ପଦ ॥
ଶୁଣିସେ ବ୍ରଜ ସୁନ୍ଦରୀ । ମଣିଲେ ତା ସତପର ।
ଜଳେ ଉବସ୍ତ୍ର ସକଳେ ହେବାର ॥ ୧ ॥
ଉଲଗ୍ନ ହୋଇ ସ୍ନାହାନ । କଲଭୂତ ବ୍ରତ ହୀନ ।
ହେଲପୂର୍ଣ୍ଣି କରିବା ଏବ୍ରତର ॥ ୨ ॥
ଅଗଣିତ ତପବ୍ରତ । କରି. ଜନେ ଅବରତ ।
ଲଭନ୍ତି କରି ଯାହାଙ୍କୁ ଗୋଚର ॥ ୩ ॥
ସେ ଫଳକୁ ଅନୁରୂପ । ଅନନ୍ତ ଯେହି ସ୍ୱରୂପ ।
ପାପହାରିଲେ କରି ନମସ୍କାର ॥ ୪ ॥

—○—

ଶ୍ଳୋକଃ । ତାସ୍ତଥାବନତାଦୃଷ୍ଟ୍ୱା ଭଗବାନ୍ ଦେବକୀସୁତଃ ।
ବାସାଂସିଅଭ୍ୟଃପ୍ରାଯଚ୍ଛକରୁଣସ୍ତେନତୋଷିତଃ ॥ ୦ ॥

ଗୀତଂ । ରାଗ ଅନନ୍ଦଭୈରବ । ଆଢ ତାଳ ॥
(ନକହ ନୂପୁରବାଣୀ । ପ୍ରଭ)
ସକଳ ବ୍ରଜଯୁବତୀ । ନିଷ୍କଳ ଭାବରେ ମତ ।
ରଖିଲେ ବଦନକୁ ପୋତିଲେ ॥ ୧ ॥
ତାଙ୍କ ଶୁଦ୍ଧଭାବ ମନ । ଜାଣି ଶ୍ରୀନନ୍ଦନନ୍ଦନ ।
କରୁଣାକଲେ ହୋଇ ପୂରୁଣା ॥ ୨ ॥
ହୋଇ ସେକାଳେ ପ୍ରସନ୍ନ । ଯୋଗେଶ୍ୱର ଭଗବାନ ।
ତାହାଙ୍କୁ ଦେଲେ ବସ୍ତ୍ରମାନଙ୍କୁ ॥ ୩ ॥
ପାଇ ବସନ ମାନଙ୍କୁ । ବହିଲେ ଅତି ତୋଷକୁ ।
ଏପରି କହେ ଗଉରହରି ॥ ୪ ॥

—୦—

ଶ୍ଳୋକଃ । ଦୃଢ଼ପ୍ରଲବ୍ଧାସ୍ତ୍ରପୟାବହାପିତାଃପ୍ରସ୍ତୋଭିତାଃକ୍ରୀଡନବ
ଚ୍ଚକାରିତାଃ ।
ବସ୍ତ୍ରାଣିଚୈବାପହୃତାନ୍ୟଥାପ୍ୟମୁଂତାନାଭ୍ୟସୂୟନ୍ପ୍ରିୟସଙ୍ଗମକ୍ଷିତାଃ

ଗୀତଂ । ରାଗ ଶ୍ରୀ । ତ୍ରିପୁଟା ତାଳ ॥
(ଆରେ ଚନ୍ଦ୍ରମୁଖି ତୋର । ପ୍ରଭ)
ବରଜରାଜ ନନ୍ଦନ । କରି ଏପରିରେ ଆଚରଣ ।
ମନରୁ ଲାଜକୁ । ଛଡ଼ାଇ ତାହାଙ୍କୁ ।
ଦୃଢ଼ବନ୍ଧନେ ହରଷେ କଲେ ମନକୁ ॥ ୧ ॥
କରିକେତେ ଉପହାସ । କ୍ରୀଡ଼ାକଲି ପରି ପୀତବାସ ।
ବସନ ତାଙ୍କର । ନେଲେ ହେଲେ ଧୀର ।
ବୃଦ୍ଧି ପ୍ରୀତ ସଙ୍ଗବାଞ୍ଛିଲେ ପ୍ରିୟଙ୍କର ॥ ୨ ॥

—•••—

ଶ୍ଳୋକଃ । ପରିଧାୟସ୍ୱବାସାଂସିପ୍ରେଷ୍ଠସଙ୍ଗମସଜ୍ଜିତାଃ ।
ଗୃହୀତଚିତ୍ତାନୋଚେଲୁସ୍ତସ୍ମିନ୍ ଲଜ୍ଜାୟିତେକ୍ଷଣାଃ ॥ ୦ ॥

ଗୀତଂ । ରାଗ ଆନନ୍ଦ ଭୈରବ । ଆଦି ତାଳ ।
(ଜନକନ୍ଦ ନସ୍କର ବାଣୀ । ପ୍ରଭୃ)
ନନ୍ଦ ନନ୍ଦ ବଚନ । ଶୁଣିଲେ ନାଗରୀ ଗଣ ।
କାନ୍ତର ସୁଖବାଞ୍ଛି ଅନ୍ତର ॥ ୧ ॥
ହରବାରୁ ତାଙ୍କ ଚିତ୍ତ । ସେମାନେ ଗୋପୀକା ଯୂଥ ।
ସ୍ତ୍ରୀ ନଥିବେଲେ ସେ ଶରଣ ॥ ୨ ॥
ନିଜ ନୟନ ମାନଙ୍କୁ । କୃଷ୍ଣଠାରେ ଅର୍ପଣଙ୍କୁ ।
କଲେ ସେ ଲଜ୍ଜାରହି ମାନସେ ॥ ୩ ॥
ଦ୍ୱିଜଗୌରହର ବୋଲେ । ଗୋପୀଗଣ ସୁଖୀହେଲେ ।
ହରିସେ ଜିତେ ଚିତ୍ତ ହରସେ ॥ ୪ ॥

•••✲•••

ଶ୍ଳୋକଃ । ତାସାଂବଞ୍ଚିତ୍ତସ୍ୱଭଙ୍ଗିତାନ୍ ସ୍ୱପାଦସ୍ପର୍ଶକାମ୍ୟଯା ।
ଧୃତବ୍ରତାନ୍ ସଂକଲ୍ପମନ୍ଦଦାମୋଦରେଶ୍ୱରଃ ॥ ୦ ॥

ଗୀତଂ ରାଗ କାମୋଦ । ଆଦି ତାଳ ।
(ପଙ୍କଜ ନୟନ ଭୃଙ୍ଗ ପଦ୍ମପଦ । ପ୍ରଭୃ)
ସ୍ୱଚରଣ ସ୍ପର୍ଶ କରବା ପାଇଁ ।
ନିଷ୍ଠାକର କରନ୍ତି ବ୍ରତକୁ ଯେହୁ ॥ ୧ ॥
ଏତଦରେ ସଂକଳ୍ପ ସେମାନଙ୍କର ।
ଶଙ୍କାପନ କଲେ ତହିଁ ଦାମୋଦର ॥ ୨ ॥
ସେହିକାଳେ ବ୍ରଜରମଣୀ ମାନଙ୍କୁ ।
କହିଲେ ହାସ ପ୍ରକାଶି ବଚନକୁ ॥ ୩ ॥

•••✲•••

ଶ୍ଳୋକଃ । ସଂକଲ୍ପୋବିଦିତଃସାଧ୍ୱୋଭବତୀନାଂମଦର୍ଚ୍ଚନଂ ।
ମୟାନୁମୋଦିତଃସୋସୌସତ୍ୟୋଭବିତୁମର୍ହତି ॥ ୧ ॥
ନମଯ୍ୟାବେଶିତଧିୟାଂକାମଃକାମାୟକଳ୍ପତେ ।
ଭର୍ଜିତାଃକ୍ୱଥିତାଧାନ୍ୟାଃପ୍ରାୟୋବୀଜାୟନେଷ୍ୟତେ ॥ ୨ ॥

ଗୀତିଂ । ରାଗ ଛୀ । ଅଠତାଳ ॥
(ଶ୍ରୀକୃଷ୍ଣଙ୍କସାଧାରଣ ମେନ୍ଦ୍ରକୁସୁର୍ଦ୍ଧ । ପ୍ରଭ)
ଆପଣାର ମତ ଅତ ନିନ୍ଦ କର ।
ସମର୍ପଣ ଦରନ୍ତେ ଯେ ନରେ ମୋ ଠାରେ ବଶ୍ୱର ॥ ୧ ॥
ହେମ ନନ୍ଦର ଯେତେକ କମଳମନ !
କାମ ସ୍ୱେଚ୍ଛାର୍ଥେ ଦ୍ୱାହର ଶୁଣ ସହଚରନ ॥ ୨ ॥
ଆଣିଜବ ଆଦ୍ୟ ଧନ୍ୟ ଲଜ୍ଜାସକଳରୁ ବହନ ।
କ୍ରୋଧ କରନ୍ତେ ବନ୍ଧନ । ଅଙ୍କୁର ନୋହେ ସେ ଜଣ ॥ ୩ ॥



ଶ୍ଳୋକଃ । ଲଭ ଭଳାବଜଂଶୌଷାଃମଏମରଂସ୍ୟଧଷପା ।
ଯଦୁର୍ଦ୍ଧଶବ୍ରତମଦ୍ଧଂତେବୃଷ୍ଣାର୍ଯିଂ ର୍ଚନଥସ୍ତ ॥ ୦ ॥

ଚୌଢିଂ । ରାଗ ଶଙ୍କରାଭରଣ । ଆଦି ତାଳ ॥
(ସଜନରେ ସଜନରେ ଆହ୍ଲାଦକରହି । ପ୍ରଭ)
ଗୋପେ ଗୋପେ ଶୁଣମୋ ବଚନ ।
ନଗପେ ଗୋ ॥ ପଦ ॥
ମୋସଙ୍ଗ ଲଭିବାକୁ । ଅତିଶୁଦ୍ଧ ଗ୍ରତକୁ ।
ରଖିକଲବ୍ରତକୁ । ଗୋପିଏଗୋ ॥ ୧ ॥
ଏତେକ ଲେ ଭୂମୂର । ସେମନୋରଥ ବାର ।
ହେଲାଅଡ ସୁନ୍ଦର । ଗୋପେ ଗୋ ॥ ୨ ॥
ମଙ୍ଗଳା ପୂଜବ ର । ଫଳ ଆସେ ଭୂମ୍ୱର ।
ହେଲ ଗୋ ଏବେ ସାରଗୋ ॥ ୩ ॥
ହେ ପତବ୍ରତ ମାନେ । ଯେ ଯାହା ର ଭୂବନେ ।
ଯାଅଗୋ ତତକ୍ଷଣେ । ଗୋପିଏଗୋ ॥ ୪ ॥
ତାଙ୍କ ଆଦେଶଧର । ଗଲେ ସକଳ ନାରୀ ।
କହେ ଜନ୍ମର ହର ଗୋପାଗଣେ ॥ ୫ ॥



ଶ୍ଳୋକଃ । ଇସ୍ଥଂସ୍ତୃ ଭଗବତ ଲବ୍ଧକାମାଃକୁମାରିକାଃ।
ଧ୍ୟାୟନ୍ତ୍ୟସ୍ତଦବାମ୍ଭୋଜଂକୃଚ୍ଛ୍ରାନ୍ନିବବୃତ୍ତଂ ॥ ୦ ॥

ଗୀତଂ । ରାଗ । ମାରୁଆ । ଅଷ୍ଟ ତାଳ ॥
(ସଖିରେ ଶ୍ରୀବୃନ୍ଦାବନରେ । ପ୍ରଭ)
ଏମନ୍ତ ବଚନ ତାଙ୍କ ନନ୍ଦନନ୍ଦନ
କହୁଲେ ଫଳାଇ ଦେଇ । ନିଗୁଣରେ ଅପଘନ ॥ ୧
ଯେତେ ଯେତେ ଥିଲା କନ୍ୟାଙ୍କ ମନୋରଥ ।
ଏତେକାଳେ ଆସି ତାହା । ହୋଇଲା ସକଳସାର୍ଥ ॥ ୨
ପୁଣି ସେ ଶ୍ରୀକୃଷ୍ଣଙ୍କର ଚରଣ ଧ୍ୟାନ ।
କରନ୍ତେ ହୋଇଗଲେ ସେ । ସକଳେ ହତ ଚେତନ ॥ ୩
ଛାଡ଼ିଯିବାକୁ କାହାର ନଥିଲା ମନ ।
ଅତି କଷ୍ଟରେ ପ୍ରବେଶ । ହେଲେ ଯାଇ ନିଜସ୍ଥାନ ॥ ୪
ଯେ ଯାହା ବସ୍ତୁମାନ ସକଳେ କରି ।
ରହିଲେ ହରଷ ଚିତ୍ତେ । କହେ ଦୀନ ଗୌରହରି ॥ ୫



# ଗୀ ତ ଗୋ ବି ନ୍ଦ ॥



## ପ୍ରଥମ ସର୍ଗଃ ।

ଶ୍ଳୋକଃ । ମେଘୈର୍ମେଦୁରମମ୍ବରଂବନଭୁବଃଶ୍ୟାମାସ୍ତମାଲଦ୍ରୁମୈ ର୍ନକ୍ତଂଭୀରୁରୟଂତ୍ୱମେବତଦିମଂରାଧେଗୃହଂପ୍ରାପୟ । ଇତ୍ଥଂନନ୍ଦନିଦେଶତ ଶ୍ଚଳିତୟୋଃପ୍ରତ୍ୟଧ୍ୱକୁଞ୍ଜଦ୍ରୁମଂରାଧାମାଧବୟୋର୍ଜୟନ୍ତିଯମୁନାକୂଳେରହଃ। କେଳୟଃ

ରାଗ ଭାମୋଦ । ଆଦି ତାଳ

ଅଥ ସ୍ନିଗ୍ଧତର ଘନେ ଜଳଧର ।
ଆଚ୍ଛାଦନ କଲା ଗଗନ ସକଳ ॥ ୧ ॥
ନବଡ ତରୁ ତମ ପ୍ରକାଶିବାରୁ ।
ଅଦୃଶ୍ୟ ହେଲା ଦଶ ଦିଶ ଦିଗନ୍ତରୁ ॥ ୨ ॥
ତରୁଣ ତମାଳ ତରୁ ମାନଙ୍କରେ ।
କୃଷ୍ଣବର୍ଣ୍ଣ ହେଲା ବନଭୂ ସକଳେ ॥ ୩ ॥
ନିଶା ଉପଗତ ଶଙ୍କାଚିତ୍ତେ ଚିନ୍ତ ।
ବଚନକୁ ପ୍ରିୟସଖୀ କହୁଛନ୍ତି ॥ ୪ ॥
ହେ ରାଧିକେ ଭୟାଳୁ ଏ ଦାମୋଦର ।
ଏହାଙ୍କୁ ତୁମ୍ଭେ ଗୃହେ ପ୍ରବେଶ କର ॥ ୫ ॥
ଶୁଣି ସେ ପ୍ରିୟସଖୀଙ୍କ ଆଦେଶକୁ ।
କାଳିନ୍ଦୀ କୂଳ କୁଞ୍ଜ ଦ୍ରୁମ ମାନଙ୍କୁ ॥ ୬ ॥
ଚଳି ଗଲେ ଯେ ରାଧା ମାଧବଙ୍କର ।
ରହଃ କେଳିମାନଙ୍କୁ ମୋ ନମସ୍କାର ॥ ୭ ॥
ସେରାଧା ମାଧବ ରହଃ କେଳିରସ ।
କହେ ଦ୍ୱିଜ ଗୌରହରି ବନ୍ଧୁ ଘୋଷ ॥ ୮ ॥



ସଖ ନାଟା । ତ୍ରିପୁଟା ତାଳ ॥

ଜୟ ମକୁନ୍ଦ ମୁରାରେ । ପଦ ।
ଜୟରୁ ଜୟ ଜୟ କୃଷ୍ଣ କେଶବ ।
ପୂର୍ଣ୍ଣ ବ୍ରହ୍ମ ସ୍ୱରୂପହେ ।
ନାରଦ ଶୁକ ସନକ ସନନ୍ଦନ ।
ରହି ନକ୍କରେ ଯା ପାଦରେ ॥ ୧ ॥
ତବ ଗୁଣ ଶିବ ବର୍ଣ୍ଣିନ ନହୁଇ ।
କେଶ ଶେଷ ଗଣେଶରେ ।
ଚେତନ ଗୁଣଗଣ କ୍ଷୁଦ୍ର ଜୀବ ।
କେ ବର୍ଣ୍ଣିନ ପାରେ ସନ୍ଦେହରେ ॥ ୨ ॥
ଶ୍ରୀ ରାଧା ମୋହନ ମୁରଲି ପଦ ।
ଅନବରତରେ ମୁର ହୃଦୟରେ ॥ ୩ ॥
ଦ୍ୱିଜ ଗୌରହରି ତୋଷେ ଏଗୀତକରି ।
କହେ ଯାନକର ଅବରତରେ ॥ ୪ ॥



ପ୍ରଳୟପୟୋଧିଜଳେ ଧୃତବାନସି ବେଦଂ
ବିହିତବହିତ୍ରଚରିତ୍ରମଖେଦଂ ।
କେଶବ ଧୃତ ମୀନଶରୀର ଜୟ ଜଗଦୀଶ ହରେ । ଧ୍ରୁବଂ ॥ ୧ ॥
କ୍ଷିତିରତିବିପୁଳତରେ ତବ ତିଷ୍ଠତି ପୃଷ୍ଠେ
ଧରଣୀଧରଣକିଣଚକ୍ରଗରିଷ୍ଠେ ।
କେଶବ ଧୃତ କଚ୍ଛପରୂପ ଜୟ ଜଗଦୀଶ ହରେ ॥ ୨ ॥
ବସତି ଦଶନଶିଖରେ ଧରଣୀ ତବ ଲଗ୍ନା
ଶଶିନି କଳଙ୍କକଳେବ ନିମଗ୍ନା ।
କେଶବ ଧୃତ ଶୂକରରୂପ ଜୟ ଜଗଦୀଶ ହରେ ॥ ୩ ॥
ତବ କରକମଳବରେ ନଖମଦ୍ଭୁତଶୃଙ୍ଗଂ
ଦଳିତ ହିରଣ୍ୟକଶିପୁତନୁଭୃଙ୍ଗଂ ।
କେଶବ ଧୃତ ନରହରିରୂପ ଜୟ ଜଗଦୀଶ ହରେ ॥ ୪ ॥

ଛଳୟସି ବିକ୍ରମଣେ ବଳିମଦ୍ଭୁତ ବାମନ
ପଦନଖନୀରଜନିତଜନପାବନ ।
କେଶବ ଧୃତ ବାମନରୂପ ଜୟ ଜଗଦୀଶ ହରେ ॥ ୫ ॥
କ୍ଷତ୍ରିୟରୁଧିରମୟେ ଜଗଦପଗତପାପଂ
ସ୍ନପୟସି ପୟସି ଶମିତଭବତାପଂ ।
କେଶବ ଧୃତ ଭୃଗୁପତିରୂପ ଜୟ ଜଗଦୀଶ ହରେ ॥ ୬ ॥
ବିତରସି ଦିକ୍ଷୁ ରଣେ ଦିକ୍ପତିକମନୀୟଂ
ଦଶମୁଖମୌଳିବଳିଂ ରମଣୀୟଂ ।
କେଶବ ଧୃତ ରାମଶରୀର ଜୟ ଜଗଦୀଶ ହରେ ॥ ୭ ॥
ବହସି ବପୁଷି ବିଷଦେ ବସନଂ ଜଳଦାଭଂ
ହଳହତିଭୀତିମିଳିତଯମୁନାଭଂ ।
କେଶବ ଧୃତ ହଳଧରରୂପ ଜୟ ଜଗଦୀଶ ହରେ ॥ ୮ ॥
ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ
ସଦୟହୃଦୟଦର୍ଶିତପଶୁଘାତଂ ।
କେଶବ ଧୃତ ବୁଦ୍ଧଶରୀର ଜୟ ଜଗଦୀଶ ହରେ ॥ ୯ ॥
ମ୍ଲେଚ୍ଛନିବହନିଧନେ କଳୟସି କରବାଳଂ
ଧୂମକେତୁମିବ କିମପି କରାଳଂ ।
କେଶବ ଧୃତ କଳ୍କିଶରୀର ଜୟ ଜଗଦୀଶ ହରେ ॥ ୧୦ ॥
ଶ୍ରୀଜୟଦେବକବେରିଦମୁଦିତମୁଦାରଂ
ଶୃଣୁ ଶୁଭଦଂ ସୁଖଦଂ ଭବସାରଂ ।
କେଶବ ଧୃତ ଦଶବିଧରୂପ ଜୟ ଜଗଦୀଶ ହରେ ॥ ୧୧ ॥

ରାଗ ମାଳବ । ତ୍ରିପୁଟା ତାଳ ।

ଜୟକୃଷ୍ଣ ଦେ ହରେ । ବେଦ ଉଦ୍ଧର ପ୍ରଳୟ ସିନ୍ଧୁ ଜଳେ ।
ବହିତ ପୋତ ଗଣ ଗତ ପଥରେ ।
ଶୋମକାସୁର ନାଶି ମୀନ ରୂପରେ ।
ଏତ ଧ୍ୟାନ ମନ ଗୋବିନ୍ଦରେ ॥ ୧ ॥

ଅତି ସ୍ଥୂଳ ତର ପୃଷ୍ଠ ଦେଶରେ ।
ଧରଣୀ ରହୁ ଅଛୁ ଅତି ନିଶ୍ଚଳରେ ।
କ୍ଷେତକ ଧରବରେ ଶୁଷ୍କବ୍ରଣ ଗଣ ।
କଠିନ ଚରମ ପ୍ରଦେଶରେ ॥ ୨ ॥

ଶୂକର ସ୍ୱରୂପ ଦଶନ ଶିଖରରେ ।
ବସିଛୁ ବସୁମତ ଲଗ୍ନୀ ଭୂତରେ ।
ଅତିଶୟ ମୃଦୁଳ ବାଳ ହିମକର ।
କେଳ କଳଙ୍କ ଭଳା ପରରେ ॥ ୩ ॥

ତୁମ୍ଭ ଶ୍ରୀକର କମଳରେ ବର ।–
ତୀକ୍ଷ୍ଣ ନଖ ଅତି ଭୟଙ୍କର ।
ଦଳିଲ ହିରଣ୍ୟ କଶିପୁ ତନୁ ଭ୍ରମର ।
ଘଷିତେ ନରହରି ରୂପରେ ॥ ୪ ॥

ଅଦଭୂତ ବାମନ ରୂପକୁ ଧରି ।
ପାଦକୁ ବଢ଼ାଇ ବଳି ଦର୍ପ ହରି ।
ହେପଦ ନଖ କୋଣୁ ଜାହ୍ନବୀ ପ୍ରସରି ।

ଷତ୍ରିୟକୁଳ ନକ୍ଷତ୍ର କରି ବଳେ ।
ସ୍ନାନ କରାଇ ଜନଙ୍କୁ ରୁଧିର ଜଳେ ।
ଅଖିଳ ପାତକ ନାଶକରି ହେଲେ ।
ପରଶୁରାମ ସ୍ୱରୂପରେ ॥ ୬ ॥

ସମର କରଣ ଦଶାଶି ରାବଣ ।
ଦଶ ବଦନ ଦଶ ଦିଗେ ବଳି ଦେଇଣ ।
ପୂର୍ତ୍ତିକଲ ଦିଗ ପତିଙ୍କର ମତ ।
ଦଶରଥୀ ସୂଜ ରୂପରେ ॥ ୭ ॥

ଶରଦ ଶଶଧର ଜିତ କଳେବର ।
ନୀଳ ନୀରଦ ନନ୍ଦତାମ୍ବର ।
କର କମଳ ହଳ ଧାରେ ଧନକର ।
ନନ୍ଦନୀ ମିଳିଲେ ତ୍ରାସରେ ॥ ୮ ॥
ବେଦ ନନ୍ଦ ରଖି ଯୁଗ ଧର୍ମକୁ ।
ପଶୁ ମାରଣ ଦେଖି ନିଷେଧି ଯଜ୍ଞକୁ ।

ବୁଦ୍ଧ ରୂପରେ ପାଳ ଜଗତକୁ ।
ଅତି ସଦୟ୍ୟ ବନ୍ଧୁ ହୃଦୟରେ ॥ ୯ ॥
ପ୍ରଚଣ୍ଡ ଧୂମକେତୁ ପରିରେ ହେ ହରି ।
ଶ୍ରୀ କରରେ କରବାଳକୁ ଧରି ।
ପାପକ ଜନର ନିମୂଳନ କରି ।
ଦେଉଛ କଳ୍କି ସ୍ୱରୂପରେ ॥ ୧୦ ॥
ଦ୍ୱିଜ ଶ୍ରୀଜୟଦେବ ଭଣିତ ଏଗୀତ ।
ସୁଖଦ ଶୂଭଦ ଅଟେ ହରି ଚରିତ ।
ଶୁଣ ହେସଧୂ ଜନର ଦେଇ ଚିତ୍ତ ।
ସାର ଅଟେ ଏ ସଂସାରରେ ॥ ୧୧ ॥

• • • ❀ • • •

ଶ୍ଳୋକଃ । ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟାନ୍ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂନମଃ ॥ ୦ ॥

ରାଗ ଦେଶାକ୍ଷ । ଆଦି ତାଳ ।
ନମୋ କୃଷ୍ଣାୟ । ଦଶାବତାର ସ୍ୱରୂପାୟ ॥ ୦ ॥
ମୀନ ରୂପ ଧରି ବେଦକୁ ଉଦ୍ଧରି ।
କୂର୍ମରୂପରେ ଧରିଛ ଧରଣୀ ହେ ॥ ୧ ॥
ଶୂକର ରୂପେ କ୍ଷିତି ଦଶନ ମୁଖରେ ରଖି ।
ନାଶିଛ ହିରଣ୍ୟ ନୃସିଂହ ରୂପରେ ହେ ॥ ୨ ॥
ଅତି ବାମନ ରୂପେ । ବଳିକି ଛଳିଲ ଆପେ ।
ଭୃଗୁପତି ରୂପେ କ୍ଷତ୍ରିୟ ନାଶିଛ ହେ ॥ ୩ ॥
ରାମ ସ୍ୱରୂପରେ । ରାବଣ ନାଶିଛ କରେ ।
ହଳକୁ ବହିଛ ବଳରାମ ରୂପରେ ହେ ॥ ୪ ॥
ବୁଦ୍ଧ ରୂପରେ । କରୁଣାକର ଜନରେ ।
କଳ୍କି ରୂପଧରି ମ୍ଳେଚ୍ଛ ନାଶିଛ ହେ ॥ ୫ ॥

ଏହେ ଗଞ୍ଜର ହର । କପଟଙ୍କୁ ଗୁପ୍ତ କର ।
ଜନ ଜନା ସ୍ୱରୂପ ଧାର ହରଙ୍କ ହେ ॥ ୭ ॥

—○—

ରାଗ ଗୌରଣ୍ଡ । ଆଡ଼ା ତାଳ ॥

ଶ୍ରିତକମଳାକୁଚମଣ୍ଡଳ ଧୃତକୁଣ୍ଡଳ ।
କଳିତଲଳିତବନମାଳ, ଜୟ ଜୟ ଦେବ ହରେ । ଧ୍ରୁବ । ୧ ।
ଦିନମଣିମଣ୍ଡଳମଣ୍ଡନ ଭବଖଣ୍ଡନ ।
ମୁନିଜନମାନସହଂସ, ଜୟ ଜୟ ଦେବ ହରେ । ୨ ।
କାଳିୟବିଷଧରଗଞ୍ଜନ ଜନରଞ୍ଜନ ।
ଯଦୁକୁଳନଳିନଦିନେଶ, ଜୟ ଜୟ ଦେବ ହରେ । ୩ ।
ମଧୁ ମୁରନରକବିନାଶନ ଗରୁଡ଼ାସନ ।
ସୁରକୁଳକେଳିନିଦାନ, ଜୟ ଜୟ ଦେବ ହରେ ॥ ୪ ।
ଅମଲକମଳଦଳଲୋଚନ ଭବମୋଚନ ।
ତ୍ରିଭୁବନଭବନନିଧାନ, ଜୟ ଜୟ ଦେବ ହରେ ॥ ୫ ॥
ଜନକସୁତାକୃତଭୂଷଣ ଜିତଦୂଷଣ ।
ସମରଶମିତଦଶକଣ୍ଠ, ଜୟ ଜୟ ଦେବ ହରେ । ୬ ।
ଅଭିନବଜଳଧରସୁନ୍ଦର ଧୃତମନ୍ଦର ।
ଶ୍ରୀମୁଖଚନ୍ଦ୍ରଚକୋର, ଜୟ ଜୟ ଦେବ ହରେ ॥ ୭ ।
ତବ ଚରଣେ ପ୍ରଣତା ବୟମିତି ଭାବୟ ।
କୁରୁ କୁଶଳଂ ପ୍ରଣତେଷୁ, ଜୟ ଜୟ ଦେବ ହରେ । ୮ ।
ଶ୍ରୀ ଜୟଦେବକବେରିଦଂ କୁରୁତେ ମୁଦଂ ।
ମଙ୍ଗଳମୁଜ୍ଜ୍ୱଳଗୀତ, ଜୟ ଜୟ ଦେବହରେ ॥ ୯ ।

ହେ ଜଗଦୀଶ ହରେ । ଶ୍ରୀଧର ।
ଦେବକଂସାରେ ଜୟ ଜୟ ।
ରାଧା କୁଚ କଲଶରେ କର ଆଶ୍ରିତ ।
କୁଣ୍ଡଳ ଧର ବନମାଳ ବିରାଜିତ ॥ ୧ ॥

ଦିବାକର ମଣ୍ଡଳେ ଅତି ଶୋଭନ ।
ମୁନି ମନ ମାନସର ହଂସହେ ଅଘହନ ॥ ୨ ॥
ହେ ଜନ ମୋହନ । କାଳିୟ ମର୍ଦ୍ଦନ ।
ଯାଦବ କୁଳ ବର୍ଦ୍ଧନେ ଏକ ॥ ୩ ॥

ମଧୁ ମୁର ନାଶନ । ହେ ଖଗ ଆସନ ।
ବୃନ୍ଦାରକ ଗଣ କ୍ରୀଡ଼ାର କାରଣ ॥ ୪ ॥
କଞ୍ଜ ଦଳ ନୟନ । ଜଗତ ଭବମୋଚନ ।
ଅଖିଳ ଭୁବନ ଜନ ଜନକ ସମାନ ॥ ୫ ॥
ଜନକ ନୃପ ନନ୍ଦନୀ । ଭୂଷଣରେ ପ୍ରବୀଣ ।
ଜିଣିଲ ରାବଣକୁ ସମରେ କରି ନିଧନ ॥ ୬ ॥
ଜଳଦ କଳେବର । ଗୋବର୍ଦ୍ଧନଧର ।
ରାଧା ଲପନ ଯାମିନୀ କର ଚକୋର ॥ ୭ ॥

ତୁମ୍ଭ ଶ୍ରୀଚରଣରେ । ବିନୀତ ବିଶ୍ୱାସରେ ।
ଏମନ୍ତ ରବ କହୁ କୁଶଳକୁ ଆମ୍ଭଠାରେ ॥ ୮ ॥
ସେ ଶ୍ରୀହରି ଚରିତ । ଗାନକର ସଂଗତ ।
ଦ୍ୱିଜ ଗୌରହରି କହେ ହରଷେ ଗୀତ ॥ ୯ ॥

—•••—

ଶ୍ଳୋକଃ । ପଦ୍ମାପୟୋଧରତଟୀପରିରମ୍ଭଲଗ୍ନ-
କାଶ୍ମୀରମୁଦ୍ରିତମୁରୋ ମଧୁସୂଦନସ୍ୟ ।
ବ୍ୟକ୍ତାନୁରାଗମିବ ଖେଲଦନଙ୍ଗଖେଦ-
ସ୍ୱେଦାମ୍ବୁପୂରମନୁପୂରୟତୁ ପ୍ରିୟଂ ବଃ । ୦ ।

ରାଗ କାମୋଦ । ଆଡ଼ ତାଳ ।
ଆହେ ଶ୍ରୋତା' ଜନେ ତୁମ୍ଭ କାମନାକୁ ।
ଶ୍ରୀହରିଙ୍କ ବକ୍ଷ ଜଳନ୍ତୁ ପୂରନ୍ତୁ ॥ ୧ ॥
ରାଧା ପୀନ ପୟୋଧର ଆଲିଙ୍ଗନେ ।
କୁଙ୍କୁମ ଲାଗି ଚିହ୍ନ ହୋଇଛି ତେଣେ ॥ ୨ ॥

ବିସ୍ତରକୁ କଲା କବି ମାନସରେ ।
ଭିତର ରାଗ ସ୍ଫୁଟ କରି' ବାହାରେ ॥ ୩ ॥
ସୁରତ କ୍ରୀଡ଼ାରୁ ହେଲା ସ୍ୱେଦପୂର୍ଣ୍ଣ ।
କହେ ଦ୍ୱିଜ ଗୌରହରି ଏହନ ॥ ୪ ॥

—*—

ବସନ୍ତେ ବାସନ୍ତୀକୁସୁମସୁକୁମାରୈରବୟବୈ-
ର୍ଭ୍ରମନ୍ତୀଂ କାନ୍ତାରେ ବହୁବିହିତକୃଷ୍ଣାନୁସରଣାଂ ।
ଅମନ୍ଦଂ କନ୍ଦର୍ପଜ୍ୱରଜନିତଚିନ୍ତାକୁଳତୟା
ବଲଦ୍ବାଧାଂ ରାଧାଂ ସରସମିଦମୂଚେ ସହଚରୀ । ୦ ।

ରାଗ ଶଙ୍କରାଭରଣ । ତ୍ରିପୁଟା ତାଳ ॥

ସରସ ବଚନ ମାନଙ୍କୁ ।
ବସନ୍ତରେ କହେ ଆଳୀ ଶ୍ରୀରାଧାଙ୍କୁ ॥ ପଦ ॥
ସାଧଶ ସୁମନସ ପରିରେ କୋମଳ ।
ପ୍ରତି ପ୍ରତିକ ନିକର ଯେ ତାହାଙ୍କୁ ॥ ୧ ॥
ଦୁର୍ଗମ ଅରଣ୍ୟରେ । ହରିଙ୍କି ଲୋଡିବାରେ ।
ଭ୍ରମଣ କରୁ ଅଛନ୍ତି ଯେ ତାହାଙ୍କୁ ॥ ୨ ॥
ବିଶେଷରେ ସ୍ମରଜ୍ୱର ଜାତହେବାରୁ ।
ଦୁଃଖରେ ଆକୁଳ ଚିତ୍ତ ଯେ ତାହାଙ୍କୁ ॥ ୩ ॥
କହେ ଗଉରହରି । କିଶୋରୀଙ୍କୁ ଏପରି ।
ଯେଣାଇ ଅତି ଯତ୍ନରେ ମାନସକୁ ॥ ୪ ॥



ରାଗ ବସନ୍ତ । ଆଦି ତାଳ ॥

ଲଳିତଲବଙ୍ଗଲତାପରିଶୀଲନକୋମଳମଳୟସମୀରେ ।
ମଧୁକରନିକରକରମ୍ବିତକୋକିଳକୂଜିତକୁଞ୍ଜକୁଟୀରେ
ବିହରତି ହରିରିହ ସରସବସନ୍ତେ

ନୃତ୍ୟତି ଯୁବତିଜନେନ ସମଂ ସଖି ବିରହିଜନସ୍ୟ ଦୁରନ୍ତେ ।
। ଧ୍ରୁବ । ୧ ।

ଉନ୍ମଦମଦନମନୋରଥପଥିକବଧୂଜନଜନିତବିଲାପେ ।
ଅଳିକୁଳସଂକୁଳକୁସୁମସମୂହନିରାକୁଳବକୁଳକଳାପେ ॥ ୨ ॥
ମୃଗମଦସୌରଭରଭସବଶମ୍ବଦନବଦଳମାଳତମାଳେ ।
ଯୁବଜନହୃଦୟବିଦାରଣମନସିଜନଖରୁଚିକିଂଶୁକଜାଲେ । ୩ ।
ମଦନମହୀପତିକନକଦଣ୍ଡରୁଚିକେଶରକୁସୁମବିକାଶେ ।
ମିଳିତଶିଲୀମୁଖପାଟଳିପଟଳକୃତସ୍ମରତୂଣବିଳାସେ ॥ ୪ ।
ବିଗଳିତଲଜ୍ଜିତ ଜଗଦବଲୋକନତରୁଣକରୁଣକୃତହାସେ ।
ବିରହିନିକୃନ୍ତନକୁନ୍ତମୁଖାକୃତିକେତକଦନ୍ତୁରିତାଶେ ॥ ୫ ॥
ମାଧବିକାପରିମଳଲଳିତେ ନବମାଳତିଜାତିସୁଗନ୍ଧୌ ।
ମୁନିମନସାମପି ମୋହନକାରିଣି ତରୁଣାକାରଣବନ୍ଧୌ ॥ ୬ ॥
ସ୍ଫୁରଦତିମୁକ୍ତଲତାପରିରମ୍ଭଣମୁକୁଳିତପୁଲକିତଚୂତେ ।
ବୃନ୍ଦାବନବିପିନେ ପରିସରପରିଗତଯମୁନାଜଳପୂତେ । ୭ ।
ଶ୍ରୀଜୟଦେବଭଣିତମିଦମୁଦୟତି ହରିଚରଣସ୍ମୃତିସାରଂ ।
ସରସବସନ୍ତସମୟବନବର୍ଣ୍ଣନମନୁଗତ ମଦନବିକାରଂ । ୮ ।

ସଙ୍ଗିନ ଏବସନ୍ତେ ହରି ଜ ରଙ୍ଗରେ ।
ବିହରଇ ମୃଗନେତ୍ରୀ ଗଣ ସଙ୍ଗରେ ॥ ପଦ ॥
ମନୋହର ଲବଙ୍ଗ ଲତା ନବୋଦନରୁ ।
ମଳୟ ମରୁତ ବହେ ଧୀରେ ।
ମଧୁକର କୋକିଳ ଗତ ତରଙ୍ଗରେ ।
କୂଜିତ କୁଞ୍ଜ କୁଟୀରେ ॥ ୧ ॥
ମତ୍ତ ମଦନେ ଅଛନ୍ତି ପଥିକ
ରମଣୀଗଣ କାରଣ ରୋଦନରେ ।
ହରଷରେ ପରି ପୂରିତ ବକୁଳାବଳୀ
ଶୋଭିତ ସୁମନସ ଭୃଙ୍ଗରେ ॥ ୨ ॥

ମୃଗମଦ ପରିମଳ ଅତି ଶସ୍ତରେ ମିଳ ।
ବର୍ଣ୍ଣିତମାଳ ପତ୍ର ନିକରେ ।
ତରୁଣ ପୁରୁଷ ହୃଦ ଭେଦନେ ମନ୍ମଥ
ନଖରୁଚି ପରି କିଂଶୁକ ଗଣ ଯହିଁରେ ॥ ୩ ॥
ମଦନ ନୃପ କନକ ଦଣ୍ଡ ରୁଚି ରୁଚିର ।
କେଶର କୁସୁମ ବିକାଶିତରେ ।
ପାଟଳୀ କୁସୁମରେ ବସିବାରୁ ଭ୍ରମରେ ।
ଶୋଭନ୍ତି ସ୍ମର ଶର ତୂଣୀର ପରିରେ ॥ ୪ ॥
ଅତି ନିର୍ଲଜ ଭୁବନ କରି ଅବଲୋକନ ।
ତରୁଣଯୁବାକରେ ହାସ ଯହିଁରେ ।
ବିରହି ଛେଦନରେ କୁନ୍ତବଦନ ପରି
କେତକରେ ଦନ୍ତୁରୁ ପ୍ରତିଭାତ ଦିକରେ ॥ ୫ ॥
ମାଧବି ସୌରଭରେ ଅତିମନୋହର ।
ନବ ମାଳିକା ସୁବାସିତରେ ।
ହେଲେ ମୁନିମାନସ କରି ଦେଉଛନ୍ତି ବଶ
ଅକାରଣ ବନ୍ଧୁରେ ଯୁବାଜନଙ୍କ ଠାରେ ॥ ୬ ॥
ମାଧବୀ ଲତା ଆଲିଙ୍ଗନେ ପୁଲକିତ ।
ବହନ୍ତି କୋରକ ଚୂତ ଯହିଁରେ ।
ବହିବାରୁ ସମୀପରେ ନିର୍ଝର ନନ୍ଦିନୀ ମାନେ ।
ଅତି ପାବନ ହେବା ଶ୍ରୀବୃନ୍ଦା ବିପିନରେ ॥ ୭ ॥
ମଧୁରିପୁ ମଧୁବନ ନୀତନ ବର୍ଣ୍ଣନ ।
କହେ ଦ୍ୱିଜ ଗୌରହରି ଗୀତରେ ।
ହେ ରସିକ ଭକତ ଗାନ କର ନିରତ ।
ବସି ଅତି ହରଷିତ ମାନସରେ ॥ ୮ ॥



ଦରବିଦଳିତମଲ୍ଲୀ ବଲ୍ଲିଚଞ୍ଚତ୍ପରାଗ-
ପ୍ରକଟିତପଟବାସୈର୍ବାସୟନ୍ କାନନାନି ।
ଇହ ହି ଦହତି ଚେତଃ କେତକୀଗନ୍ଧବନ୍ଧୁଃ
ପ୍ରସରଦସମବାଣପ୍ରାଣବଦ୍ଗନ୍ଧବାହଃ ॥ ୦ ॥

ଉନ୍ମୀଳନ୍ମଧୁଗନ୍ଧଲୁବ୍ଧମଧୁପବ୍ୟାଧୂତଚୂତାଙ୍କୁର-
କ୍ରୀଡତ୍କୋକିଳକାକଳୀକଳକଳୈରୁଦ୍ଗୀର୍ଣ୍ଣକର୍ଣ୍ଣଜ୍ୱରାଃ ।
ନୀୟନ୍ତେ ପଥିକୈଃ କଥଂକଥମପି ଧ୍ୟାନାବଧାନକ୍ଷଣ
ପ୍ରାପ୍ତପ୍ରାଣସମାସମାଗମରସୋଲ୍ଲାସୈରମୀ ବାସରାଃ । ୦ ।

ରାଗ ତୋଡ଼ି । ଆଦି ତାଳ ।

ମରୁତ ଶୀତଳତରେ ବହୁ ଦରଦ୍ର ରଣ ଶର ଦ ଦକ୍ଷରେ ।
ଭେଦଞ୍ଚ ପୂର୍ବାପର । ବନ୍ଧୁ ଅଷ୍ଟ ସାର ।
ପୂରିଏ ମଦନର ତନୁପ୍ରାଣ ଦରରେ । ୧ ।
ତର ପ୍ରଫୁଲ୍ଲିତ ମଲ୍ଲୀ ଲତରୁ ଧୂଳି ।
ଜନତ ହୋଇ ଉଚ୍ଛୁଳି ଗନ୍ଧଚୂର୍ଣ୍ଣ ପବନରେ । ପରିମଳକୁ ଧରେ ।
କ ନଳ ମ ନଙ୍କରେ । ଦୀପ ପ୍ରକାଶ କରେ । ୨ ।
ପ୍ରକାଶ ମଧୁବାସରେ ଭୃଙ୍ଗନକରେ ଲୋଭିତ ହୋଇ ।
କମ୍ପିତ ଚୂତାଙ୍କୁର । ଗୃଧ୍ନୁ ପିକ ନକର ।
କର ଧ୍ୱନି ମଧୁ । ତରହେ ହରଷରେ । ୩ ।
ସେ ଧ୍ୱନି ପଥିକ ଶ୍ରେଣୀ କର୍ଣ୍ଣରେ ଶୁଣି । କଣ୍ଠିକୁ ସନ୍ତାପ ମଣି
ନମସ୍ତେ ଧ୍ୟାନକର । କାନ୍ତା ସଙ୍ଗମ ସୁଖ ।
କଷ୍ଟେ ଗୌରବହର ବଞ୍ଚିଲେ ଏପରରେ । ୪ ।

—*—

ଅନେକନାରୀପରିରମ୍ଭସମ୍ଭ୍ରମସ୍ଫୁରନ୍ମନୋହାରିବିଲାସଲାଳସଂ ।
ମୁରାରିମାରାଦୁପଦର୍ଶୟନ୍ତ୍ୟସୌ ସଖୀ ସମକ୍ଷଂ ପୁନରାହ ରାଧିକାଂ ।

ରାଗ କରୁଣା ଶ୍ରୀ । ଅଷ୍ଟ ତାଳ ।

ଶୁଣମୋ ବଚନକୁ ଗୋ ସଙ୍ଗିନି !
ଦେଖ ଏ ବନରେ ପ୍ରାଣନାଥଙ୍କୁ ଗୋ । ପଦ ।
ଚର୍ଜନୀ ଅଙ୍ଗନା ବିନ୍ୟାସ କରି ।
ବୋଲେ ଚୌବନା ବଦନରେ ଶ୍ରୀହରିଗୋ । ୧ ।
ରମଣୀଙ୍କ ଆଲିଙ୍ଗନ ବେଗରେ ।
ପ୍ରକାଶ ସ୍ୱର ବିଳାସ ରାଗରେ ଗୋ । ୨ ।

କଦମ୍ବ ତଳ ଘେନି ଗଉଡ଼ ହୁର ।
ସଖିକହେ କିଶୋରଙ୍କ ଏପରି କଥା । ୩ ।

—୦—

ରାଗ ଟଙ୍କଶ୍ରୀରଣ । ଆଠ ତାଳ ॥

ଚନ୍ଦନଚର୍ଚ୍ଚିତନୀଳକଳେବରପୀତବସନବନମାଳୀ
କେଳିଚଳନ୍ମଣିକୁଣ୍ଡଳମଣ୍ଡିତଗଣ୍ଡଯୁଗସ୍ମିତଶାଳୀ
ହରିରିହ ମୁଗ୍ଧବଧୂନିକରେ
ବିଳାସିନି ବିଳସତି କେଳିପରେ । ୧ । ଧ୍ରୁବଂ ।
ପୀନପୟୋଧର ଭାରଭରେଣ ହରିଂ ପରିରଭ୍ୟ ସରାଗଂ ।
ଗୋପବଧୂରନୁଗାୟତି କାଚିଦୁଦଞ୍ଚିତପଞ୍ଚମରାଗଂ । ୨ ।
କାପି ବିଳାସବିଲୋଳବିଲୋଚନଖେଳନଜନିତମନୋଜଂ ।
ଧ୍ୟାୟତି ମୁଗ୍ଧବଧୂରଧିକଂ ମଧୁସୂଦନବଦନସରୋଜଂ । ୩ ।
କାପି କପୋଳତଳେ ମିଳିତା ଲପିତୁଂ କିମପି ଶ୍ରୁତିମୂଲେ ।
ଚାରୁ ଚୁଚୁମ୍ବ ନିତମ୍ବବତୀ ଦୟିତଂ ପୁଲକୈରନୁକୂଲେ ॥ ୪ ।
କେଳିକଳାକୁତୁକେନ ଚ କାଚିଦମୁଂ ଯମୁନାଜଳକୂଲେ ।
ମଞ୍ଜୁଳବଞ୍ଜୁଳକୁଞ୍ଜଗତଂ ବିଚକର୍ଷ କରେଣ ଦୁକୂଲେ । ୫ ।
କରତଳତାଳତରଳବଳୟାବଳିକଳିତକଳସ୍ୱନବଂଶେ ।
ରାସରସେ ସହ ନୃତ୍ୟପରା ହରିଣା ଯୁବତିଃ ପ୍ରଶଂସେ । ୬ ।
ଶ୍ଳିଷ୍ୟତି କାମପି ଚୁମ୍ବତି କାମପି କାମପି ରମୟତି ରାମାଂ ।
ପଶ୍ୟତି ସସ୍ମିତଚାରୁପରାମପରାମନୁଗଚ୍ଛତି ବାମାଂ । ୭ ।
ଶ୍ରୀ ଜୟଦେବଭଣିତମିଦମଦ୍ଭୁତକେଶବକେଳିରହସ୍ୟଂ ।
ବିପିନବହୋଦକଳାବଳିତଂ ବିତନୋତୁ ଶୁଭାନି ଯଶସ୍ୟଂ । ୮ ।

ବାରେ ଗୁହାଁ ହରିଙ୍କି ଗୋ । କିଶୋରି ।
ମୁଗ୍ଧ ବଧୂ ଗଣ ସେବନଣଁ ଆପଣ ।
କ୍ରୀଡ଼ା କରୁଛନ୍ତି । ଏହିବନରେ ଗୋ । ପଦ ।

ଶ୍ୟାମ ସୁଚିକ୍କଣ । ଶ୍ରୀଅଙ୍ଗେ ଚନ୍ଦନ ।
ଭୂଷଣ ପୀତ ଦୁକୂଳ ବନ ଦାମ ।
କ୍ରୀଡାରେ ଚଞ୍ଚଳ । ମକର କୁଣ୍ଡଳ ।
ଶୋଭା ଗଣ୍ଡସ୍ଥଳ ମଦନ୍ତ ସରେ ଗୋ । କଶୋରୀ ॥ ୧ ॥
ପୃଥୁଳ ଉରଜ ଗରୁତର ଭରେ ।
କେଉଁ ଗୋପୀ ସ୍ନେହେ ଆଲିଙ୍ଗନ କରେ ।
ମଧୁର ପଞ୍ଚମ ଗାନ କରି ଶ୍ୟାମ ।-
ସୁନ୍ଦରଙ୍କ ମନ ମୋହୁବାରେ ଗୋ ॥ ୨ ॥
ବଳହିତ ଭରେ ଚଞ୍ଚଳିତ ନେତ୍ର ।
ତହୁଁ କାମ ବିକାର ହେବାରୁ ଜାତ ।
କେଉଁ ମୁଗ୍ଧ ଗୋପୀ ଧ୍ୟାବେପେ ।
ଶ୍ୟାମ ମୁଖକୁ ସ୍ନେହେଁ ବିଶେଷେ ଗୋ । କଶୋରୀ ॥ ୩
ଏକ ନିତମ୍ବିନୀ କରି ସୁମାନକୁ ।
ମିଳିଲି ପାଶରେ କଣ୍ଠୁ କହିବାକୁ ।
ପୁଲକରେ ପୂର୍ଣ୍ଣ ହୋଇବାର କର୍ଣ୍ଣ ।-
ମୂଳେ ସ୍ବରୁ ଚୁମ୍ବନକୁ ଦେଲ ଗୋ ॥ ୪ ॥
ଯମୁନାର ବନ କୂଳେ ମନୋହରେ ।
କେତନସି କୃଷ୍ଣଙ୍କୁ ଯିବାକାଳେ କରେ ।
ପୀତାମ୍ବର ଧରି । କେଉଁ ବ୍ରଜମାଈ ।
ଓଠାଉଛି କେଳି କଉତୁକେ ଗୋ । କଶୋରୀ ॥ ୫ ॥
କରତାଳ ଚଞ୍ଚଳରୁ କଙ୍କଣର ।
ନମ୍ବକ ହେବାର ପ୍ରତି ବଂଶୀସ୍ବର ।
ରାସରେ ନୃତ୍ୟରେ ଥିବା ଯୋଷାବରେ ।
କୃଷ୍ଣତାଙ୍କ ପ୍ରଶଂସାକୁ କଲେ ଗୋ ॥ ୬ ॥
କେଉଁ ରମଣୀକି ଆଲିଙ୍ଗନ କରେ ।
କାହାଗଣ୍ଡେ ଚୁମ୍ବନକୁ ଦିଏ ଧୀରେ ।
କ୍ରୀଡାକୁ କରଇ ସ୍ମିତ ହାସେ ଗୁହୁଁ ।
କାହା ପଛରେ ଗୋଡାଇଛନ୍ତି ଗୋ ॥ ୭ ॥

ବ୍ରଜ ରମଣୀ ସଙ୍ଗ ତେ ଶ୍ରୀହରି ।
କ୍ରୀଡ଼ା କରବଙ୍କ ହୃଦୟରେ ସ୍ମର ।
ଛନ୍ଦ ଅତ ପ୍ରମୋଦ ହରଷରେ ପଦ ।
କହେ ଗୌରହରି ଜନହୃତେ ଗୋ । ଜଗ୍ଗୋଷ୍ଠ ॥ ୮ ॥

…***…

ବିଶ୍ୱେଷାମନୁରଞ୍ଜନେନ ଜନୟନ୍ନାନନ୍ଦମିନ୍ଦୀବର-
ଶ୍ରେଣୀଶ୍ୟାମଳକୋମଳୈରୁପନୟନ୍ନଙ୍ଗୈରନଙ୍ଗୋତ୍ସବ ;
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗମାଳିଙ୍ଗିତଃ ।
ଶୃଙ୍ଗାରଃ ସଖି ମୂର୍ତ୍ତିମାନିବ ମଧୌ ମୁଗ୍ଧୋ ହରିଃ କ୍ରୀଡତି ।୦।

ସ୍ୱର ଅହାରି । ଝୁଲୁଆ ତାଳ ॥

ଶୃଙ୍ଗାର ମୂର୍ତ୍ତି ଧରବେ ବସନ୍ତରେ ।
କ୍ରୀଡ଼ା କରୁଛନ୍ତି ହରି ଭ ବୁଦରେ ॥ ୧ ॥
ଇନ୍ଦୀବର ଶ୍ୟାମଳ କୋମଳ ଅଙ୍ଗ ।
ପୂରାଉ ଦେଉଛନ୍ତି ମଦନ ରଙ୍ଗ ॥ ୨ ॥
ବ୍ରଜସ୍ତ୍ରୀ ମାନେ ସର୍ବସ୍ୱ ହୋଇ ଚଲେ ।
ବେଢ଼ି ରହିଛନ୍ତି ଅତି ହରଷିତେ ॥ ୩ ॥
ପ୍ରତି ପ୍ରତି ଅଙ୍ଗ ମାନଙ୍କରେ ଭରି ।
ଯଥା ଯୋଗ୍ୟ ଆଶ୍ଳେଷ ବୁ ଦେଇ ହରି ॥ ୪ ॥
ଦେଖନ୍ତା ଅଣ୍ଟଳେ ଭଗଇ ତୋଷ ।
ଗୌରହରି କହେ ସେ ବୃନ୍ଦରେ ବଶ ॥ ୫ ॥

—*—

ଅଦ୍ୟୋତ୍ସଙ୍ଗବସଦ୍ଭୁଜଙ୍ଗକବଳକ୍ଲେଶାଦବେଶାଚଳଂ
ପ୍ରାଲେୟଂ ପ୍ଲବନେଚ୍ଛୟାନୁସରତ ଶ୍ରୀଖଣ୍ଡଶୈଳାନିଳଃ ।
କିଞ୍ଚ ସ୍ନିଗ୍ଧରସାଳମୌଳିମୁକୁଳାନ୍ୟାଲୋକ୍ୟହର୍ଷୋଦୟା- ।
ଦୁନ୍ମୀଳନ୍ତିକୁହୂଃକୁହୂରତ କଲୋତ୍ତାଳାଃ ପିକାନାଂ ଗିରଃ ।୦ ।

ରାଗ ଭୈରବୀ । ଅଟତାଳ ।

ରମଣିରେ । ଋତୁ ପୁଷ୍ପବଣରେ ଆହା ।
କ ପ୍ରବଳ ବସନ୍ତ ହୋଇ ଅଛନ୍ତିରେ । ପଦ ।
ଚନ୍ଦନ ଗିରି ତରୁ ଦକ୍ଷି ଅନ୍ତମୁଖରୁ ।
ବାହାରି ମରୁତ ଅତି ସନ୍ତାପ ଲଭିବାରୁ ।
ସେ ଶୈଳ ଧୀରେ ଧୀରେ ।
ଆସି ହିମ ନଗରେ ବୁଡିବାରୁ ହିମାଦ୍ରି ଅନୁସରିରେ । ୧ ।
ଅଳପ ମଞ୍ଜୁଳ । ରସାଳ ବକୁଳ ।
ସ୍ୱହଂ କୋକିଳ କୁଳରେ ହରଷକୁ ବହୁ ।
ଉଚ୍ଚ ପଞ୍ଚମ ସ୍ୱରେ ମଧୁର କୋମଳରେ ।
କୁହୁ କୁହୁ ଏପରି ରବ ପୂରୁଛନ୍ତିରେ । ୨ ।
କହେ ଗଉର ହରି । ସେକାଳେ ସହଚରୀ ।
ବୋଇଲେ ଶୁଣରେ ନବୀନ କିଶୋରୀ ଗୋରି ।
ମନ୍ଦଗତି ଶୀତଳ ମଧୁକାଳ ଅନଳ ।
ଦେଖିବାକ୍ଷଣି ଚିତ୍ତ ହରି ନେଉଛନ୍ତିରେ । ୩ ।

—•••—

ରାସୋଲ୍ଲାସଭରେଣ ବିଭ୍ରମଭୃତାମାଭୀରବାମଭ୍ରୁବା-
ମଭ୍ୟର୍ଣ୍ଣେ ପରିରଭ୍ୟ ନିର୍ଭରମୁରଃ ପ୍ରେମାନ୍ଧୟା ରାଧୟା ।
ସାଧୁ ତ୍ୱଦ୍ବଦନଂ ସୁଧାମୟମିତି ବ୍ୟାହୃତ୍ୟ ଗୀତସ୍ତୁତି-
ବ୍ୟାଜାଦୁଦ୍ଭଟଚୁମ୍ବିତଃ ସ୍ମିତମନୋହାରୀ ହରିଃ ପାତୁ ବଃ ।୪୯।
ଇତି ଶ୍ରୀ ସଙ୍ଗୀତ ଗ୍ରନ୍ଥ ଛନ୍ଦୋଦ ଗୌରହରି କୃତ
ପ୍ରଥମ ସର୍ଗଃ ।

—※—

ଦ୍ୱିତୀୟ ସର୍ଗଃ ।

ବିହରତି ବନେ ରାଧା ସାଧାରଣପ୍ରଣୟେ ହରୌ
ବିଗଳିତନିଜୋତ୍କର୍ଷାଦୀର୍ଷ୍ୟାବଶେନ ଗତାନ୍ୟତଃ ।
କ୍ୱଚଦପି ଲତାକୁଞ୍ଜେ ଗୁଞ୍ଜନ୍ମଧୁବ୍ରତମଣ୍ଡଳୀ-
ମୁଖରଶିଖରେ ଲୀନା ଦୀନାପ୍ୟୁବାଚ ରହଃ ସଖୀଂ । ୧ ।

ରାଗ ସାରଙ୍ଗ । ଅଠ ତାଳ ॥

ଶ୍ରୀହରିଙ୍କ ସାଧାରଣ ସ୍ନେହକୁ ସ୍ପର୍ଦ୍ଧି ।
ଶ୍ରୀବୃଷଭାନୁ ନନ୍ଦିନୀ ମାନସେ ରୋଷକୁ ବନ୍ଧି ॥ ୧ ॥
ଆଳି ଆବଳି ଧ୍ୱନରେ, ମିଳିତ ଲତାକୁଞ୍ଜରେ ।
ବସି ପ୍ରିୟ ବନ୍ଧୁପିରେ କହେ ଅତି ଦୁଃଖୀହୋଇ ॥ ୨ ॥
ମତେ ବନାକର ହରିଣାକ୍ଷିଗଣ ସଙ୍ଗେ ଧରି ।
ବନମଧ୍ୟେ ସଂଚରି କ୍ରୀଡାମନ କଲେ ତର୍ଦ୍ଧି ॥ ୩ ॥
ସେବୃନ୍ଦାବନେଶ୍ୱରୀ ପଦଯୁଗଳକୁ ସ୍ମରି ।
କହେ ଗୀତ ଗୌରହରି ହରଷ ମତକ ବନ୍ଧି ॥ ୪ ॥



ରାଗ ଆନନ୍ଦଭୈରବ । ତାଳ ॥

ସଂଚରଦଧରସୁଧାମଧୁରଧ୍ୱନିମୁଖରିତମୋହନବଂଶଂ
ଚଳିତଦୃଗଞ୍ଚଳଚଞ୍ଚଳମୌଳିକପୋଳବିଲୋଳବତଂସଂ ।
ରାସେ ହରିମିହ ବିହିତବିଳାସଂସ୍ମରତି ମନୋମମ କୃତପରିହାସଂ.
। ୨ । ଧ୍ରୁବ ।

ଚନ୍ଦ୍ରକଚାରୁମୟୂରଶିଖଣ୍ଡକମଣ୍ଡଳବଳୟିତକେଶଂ ।
ପ୍ରଚୁରପୁରନ୍ଦରଧନୁରନୁରଞ୍ଜିତମେଦୁରମୁଦିରସୁବେଶଂ ॥ ୩ ॥
ଗୋପକଦମ୍ବନିତମ୍ବବତୀମୁଖଚୁମ୍ବନଲମ୍ଭିତଲୋଭଂ ।
ବନ୍ଧୁଜୀବମଧୁରାଧରପଲ୍ଲବମୁଲ୍ଲସିତସ୍ମିତଶୋଭଂ ॥ ୪ ॥
ବିପୁଳପୁଳକଭୁଜପଲ୍ଲବବଳୟିତବଲ୍ଲବଯୁବତିସହସ୍ରଂ ।
କରଚରଣୋରସି ମଣିଗଣଭୂଷଣକିରଣବିଭିନ୍ନତମିସ୍ରଂ ॥ ୫ ॥
ଜଳଦପଟଳଚଳଦିନ୍ଦୁବିନିନ୍ଦକଚନ୍ଦନତିଳକଲଲାଟଂ ।
ପୀନପୟୋଧରପରିସରମର୍ଦ୍ଦନନିର୍ଦ୍ଦୟହୃଦୟକପାଟଂ ॥ ୬ ॥
ମଣିମୟମକରମନୋହରକୁଣ୍ଡଳମଣ୍ଡିତଗଣ୍ଡମୁଦାରଂ ।
ପୀତବସନମନୁଗତମୁନିମନୁଜସୁରାସୁରବରପରିବାରଂ ॥ ୭ ॥
ବିଶଦକଦମ୍ବତଳେ ମିଳିତଂ କଳିକଲୁଷଭୟଂ ଶମୟନ୍ତଂ ।
ମାମପି କିମପି ତରଙ୍ଗଦନଙ୍ଗଦୃଶା ମନସା ରମୟନ୍ତଂ ॥ ୮ ॥

ଶ୍ରୀଜୟଦେବଭଣିତମତସୁନ୍ଦରମୋହନମଧୁରିପୁରୂପଂ ।
ହରିଚରଣସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତାମନୁରୂପଂ ॥ ୯ ॥

ମୁରୁଛୁ ମେ ଚଉଦଗୋ । କନକବତ ସଖିରେ ।
ଏପ୍ରକାରେ ପରିହାସ କରନ୍ତି ଶ୍ରୀହରିଙ୍କ ସନ୍ତତ ॥ ପଦ ॥

ଅଧରେ ସଞ୍ଚରିତ । ସୁଧାସଙ୍ଗରୁ ଜାତ ।
ହେ ଇଚ୍ଛିରତର ମୋହିତ କରେ ଯାଂବଂଶୀଗୀତେ ଗୋ ।
ଗତା ଗତ ଦେହାନ୍ତ । ମସ୍ତକ ଚଞ୍ଚଳତ ।
କପୋଳ ଯୁଗଳେ କଣ୍ଠୋଉଂସ ବଲ୍ଲେଳତ ॥ ୧ ॥

ଅର୍ଦ୍ଧଚନ୍ଦ୍ର ଚନ୍ଦ୍ରିକା ସ୍ଫୁରୁଣିଖଣ୍ଡକ ।
ବେଷ୍ଟିତ କେଶରେ । ମଣ୍ଡଳ ଆକାରେ ଗୋ ।
ବଶେଷ ରଙ୍ଗୁଧନୁରେ ଚତ୍ରହୋଇଛୁ ।
ଶ୍ୟାମଳ ମେଘପରି ଯାହାଙ୍କ ବେଶ ଶୋଭିତ ॥ ୨ ॥

ଗୋପ ଯୁବତୀଙ୍କର । ଚୁମ୍ବିବାରେ ଅଧର ।
ଲୋଭିତ ହୋଇଛୁ ଶ୍ରୀମୁଖ ତାହାଙ୍କର ଗୋ ।
ବନ୍ଧୁଲିରୁ ସୁନ୍ଦର । ଅଧର ପଲ୍ଲବରେ ।
ହେବାର ଅଙ୍ଗୀକାର । ଦରହାସ ଶୋଭିତ ॥ ୩ ॥

ପୁଥୁଳ ପୁଲକତ ବାହୁଲତାରେ ବେଷ୍ଟିତ ।
ହୋଇଛନ୍ତି ଗୋପାଙ୍ଗନା ଅପର-ମିତ ଗୋ ।
ପ୍ରତ ଅଙ୍ଗ ଭୂଷଣ । ମଣିଗଣ କରଣରେ ।
କରିଦେଉଛୁ ତମେରକୁ ସେ ହତ ॥ ୪ ॥

ମୂହର ନକର କୋଳେ । ପ୍ରତଳଚନ୍ଦ୍ର ।
ନନ୍ଦତ ମଳୟଜ । ବନ୍ଦଲଲାଟର ଗୋ ।
ବ୍ରଜ ଯୁବତୀଙ୍କର । ପୁଥୁଳ ପୟୋଧର ।
ମର୍ଦ୍ଦନେ ନିଷ୍ଠୁର 'ହୃଦୟ କବାଟ ଯୁତ ॥ ୫ ॥

ମଣିରେ ଖଚତ । ରୁଚର କୁଣ୍ଡଳ ।
ଗଣ୍ଡିତ ହୋଇଛୁ । ଯେଉଁ ଗଣ୍ଡସ୍ଥଳ ଗୋ ।
ପୀତ ବସନ ଧର । 'ମୁନିଜନ ଦେବାସୁର ।
ହୋଇଛନ୍ତ ତାହାଙ୍କର ଉତ୍ତମରେ ଅନୁଗତ ॥ ୬ ॥

ନିର୍ମଳ କଦମ୍ବ ତରୁତଳ ବିହାରୀ ।
କଳି କଳୁଷ ଭୟନାଶନ ଶ୍ରୀହରି ଗୋ ।
ମୋ ଠାରେ ଚଞ୍ଚଳ ନେତ୍ରାନ୍ତରେ କରି ।
କ୍ରୀଡ଼ା ଅଭିଳାଷ ହୋଇଛୁ ଚଉଦ୍ର ॥ ୭ ॥
କହେ ଦ୍ୱିଜ ଗଉରହରି ଅତି ସୁନ୍ଦର ।
ମୋହନ ବଂଶୀଧର । ଗୀତ ମନୋହର ଗୋ ।
ଶ୍ରୀହରି ଚରଣ । ସ୍ମରଣ ଭକତ ଗଣ ।
ଏରସପର ମନ ।- ନବେଶ ରଜନୀ ଦିନ ॥ ୮ ॥



ଗଣୟତ ଗୁଣଗ୍ରାମଂ ଭ୍ରାମଂ ଭ୍ରମାଦପି ନେହତେ
ବହତ ଚ ପରଦ୍ରୋଷଂ ଦୋଷଂ ବିମୁଞ୍ଚତ ଦୂରତଃ ।
ଯୁବତଷୁ ବଲବୃଷ୍ଣେ କୃଷ୍ଣେ ବିହାରଣି ମାଂ ବିନା
ପୁନରପି ମନୋ ବାମଂ କାମଂ କରୋତ କରୋମିକଂ ॥ ୦ ॥

ରାଗ ଶଙ୍କରାଭରଣ । ଆଦି ତାଳ ॥

ସଜନରେ । ସଜନରେ । ଆହାକ କରିବି ।
ସଜନରେ ॥ ପଦ ॥
ସେ ମୋରେ ପ୍ରତିକୂଳ । ହେଲେ କେବଳ ।
ଅଭିଳାଷ କରୁଛି ॥ ୧ ॥
ମୋବନା ତୁଷ୍ଟ ଭୁରେ । ସେଗୋପୀଙ୍କ ସଙ୍ଗରେ ।
କ୍ରୀଡ଼ା କରେ ସ୍ୱଚ୍ଛନ୍ଦରେ ॥ ୨ ॥
ଭ୍ରମର ହେଲେହେଁ ମନ । କେବଳ ହରି ଗୁଣ ।
ଗଣ ଗଣନା କରେ ॥ ୩ ॥
କଲେ ସେ କେତେ ଦୋଷ । ଦୂର କରି ଅଶେଷ ।
ପାଉଛି ସଂତୋଷ ॥ ୪ ॥
କହେ ଗଉର ହରି । ଶୁଣଗୋ ସହଚରି ।
ବାଞ୍ଛବମୁ କପରି ॥ ୫ ॥



ନଭୃତ ନକୁଞ୍ଜଗୃହଂ ଗତୟା ନଶି ରହସି ନଲୀୟବସନ୍ତଂ
ଚକତବଲୋକତସକଲଦଶା ରତରଭସବଶେନ ହସନ୍ତଂ
ସଖି ହେ କେଶିମଥନମୁଦାରଂ । ରମୟ ମୟା ସହ ମଦନ
ମନୋରଥଭାବତୟା ସବକାରଂ । ଧ୍ରୁବ । ୧ ।
ପ୍ରଥମସମାଗମଲଜ୍ଜିତୟା ପଟୁ ଚଟୁଶତୈରନୁକୂଲଂ ।
ମୃଦୁମଧୁରସ୍ମିତଭାଷିତୟା ଶିଥିଲୀକୃତଜଘନଦୁକୂଲଂ । ୨ ॥
କଶଲୟଶୟନନବେଶିତୟା ଚରମୁରସି ମମୈବ ଶୟାନଂ ।
କୃତପରିରମ୍ଭଣଚୁମ୍ବନୟା ପରିରଭ୍ୟ କୃତାଧରପାନଂ । ୩ ।
ଅଲସନମୀଲତଲୋଚନୟା ପୁଲକାବଳିଲଳିତକପୋଲଂ ।
ଶ୍ରମଜଲସକଳକଳେବରୟା ବରମଦନମଦାଦତଲୋଲଂ ।
କୋକିଲକଲରବ କୂଜିତୟା ଜିତମନସିଜତନ୍ତ୍ରବଚାରଂ ।
ଶ୍ଳଥକୁସୁମାକୁଲକୁନ୍ତଲୟା ନଖଲିଖିତଘନସ୍ତନ ଭାରଂ । ୪ ॥
ଚରଣରଣତମଣିନୂପୁରୟା ପରିପୂରିତସୁରତ ବତାନଂ ।
ମୁଖରବଶଙ୍ଖଲମେଖଳୟା ସକଚଗ୍ରହଚୁମ୍ବନଦାନଂ । ୫ ॥
ରତସୁଖସମୟରସାଲସୟା ଦରମୁକୁଳତନୟନସରୋଜଂ ।
ନଃସହନପତତଲତକୁଲତୟା ମଧୁସୂଦନମୁଦତମନୋଜଂ ।
ଶ୍ରୀଜୟଦେବଭଣିତମିଦମତଶୟମଧୁରିପୁନଧୁବନଶୀଳଂ ।
ସୁଖମୁତ୍କଣ୍ଠିତଗୋପବଧୂକଥିତଂ ବତନୋତୁ ସଲୀଳଂ । ୬ ।

ରାଗ ମୂଖାର ! ଆଡ ତାଳ ॥

କେଶୀ ଦମିତ ଅଦ୍ଭୁତ ବଳାସିତ ମଦବ ଅନନ୍ତ ସେ ହୃଷିକେଶ ।
କାମ ଅଭିଳାଷରେ ସ୍ୱବତ ଅନୁକ୍ରମ ହେ ସଖି ମତେ
ଲୀଳାରେ କରଂ ପ୍ରବେଶ । ପଦ ।

ମୁଁ ଯେ ନଶି ଏକାନ୍ତ । କେଳକୁଞ୍ଜ ତଳ୍ପକ । ପ୍ରାପତ ହୋଇଥିବ
ସେ ମୋର ଇତସ୍ତତ । ଖୋଜିବା ବେଗକୁ । ଦେଖିବା ଇଚ୍ଛାରେ
ଥିବେଲୁଚ ମୁପୁଣି ଛଳହେଇ ପ୍ରତବଗକୁ । ସେତ ଆସିଲେ ବୋଲି ।–
ସ୍ମୃତ ଥିବ ତାହାଙ୍କୁ । ମୋହର ଏପରରେ । ସଂଭ୍ରମ ଦେଖିବାରୁ ।
ରତ ସମ୍ଭୋଗ ଉତ୍କଣ୍ଠାରେ ହସୁଥିବେ ॥ ୨ । ପ୍ରଥମ ପ୍ରବେଶ

ହେବାର ସମୟରେ । ଲଜ୍ଜା ସହିତ ମୁହଁ ହୋଇଥିବ ମୋହର ଏମନ୍ତ ।
ଦେଖି ଅପରମିତ । କରୁଥିବେ ବଦନ୍ୟ ଷ୍ତରଣାକ । ମୃପୁଣି ମୃଦୁଳ
ମଧୁର ମନ୍ଦହାସ । ସହିତ ହେବା ବଚନ । କରନ୍ତେ ପ୍ରକାଶ ।
ମୋହର ଜଘନର ଅମ୍ବର ସବୁର ଅତି ଆତୁରରେ ଶିଥିଳ କରି
ଦେବେ ॥ ୨ ॥ ପଲ୍ଲବ ତଳପରେ ପ୍ରେମେ ମୋତେ ଶୀଘ୍ରରେ ।
ଆକର୍ଷି ପ୍ରବେଶ କରାଇବେ । ମେ ହରି ଉରପର ଚରି କାଳ ଯାଏ ।
ଅତିସୁଖରେ ଶୟନ କରିବେ । ତାଙ୍କ ଏସ୍ପତ ସ୍ପର୍ଶ ମୃଦୁହିଁ କ
କରନ୍ତ ଆଲିଙ୍ଗନ ଚୁମ୍ବନ ମାନଙ୍କୁ ବହିବ । ସେହିକାଳେ ସେ ପ୍ରତି
ସ୍ପୃରୁ ଆଲିଙ୍ଗନ । ଚୁମ୍ବନକୁ ଦେଇ ମୋ ଅଧରକୁ ତୋଷିବେ ॥ ୩ ॥
ଅଳସକୁ ବହି । ଦର ପ୍ରକାଶ ହୋଇ ଥିବ ନୟନ ଯୁଗଳ ମୋହର ।
ରୋମ ହିତରେ ମନୋହର ହୋଇଥିବ । ଗଣ୍ଡସ୍ଥଳ ଯୁଗଳ ତାହାଙ୍କର ।
ସୁରତ ବରଧିତ ଶ୍ରମଜଳ ନିକର । ସହିତ ହେଉ ଥିବ ମୋହର
କଳେବର । ଏସ୍ପର୍ଶକ ହରଷେ ଉତ୍ତମ କାମବଶେ । ଅଧିକ ଚଞ୍ଚଳ
ଶ୍ୱାସକୁ ବହିଥିବେ ॥ ୪ ॥ ପିକ ପାରାବତ । ଏହିମାନଙ୍କର ରୁତ ।
ପରିରେ କୂଜିତ ଶୁଣି ମୋର । କାମ ଶାସ୍ତ୍ର ମାନଙ୍କ ସିଦ୍ଧାନ୍ତକୁଂ ।
କରିଥିବେ ଆପଣା ବଶୀକାର । ଶିଥିଳ ହେଉଥିବା କୁସୁମ ମାନ
ଙ୍କରେ ଆକୁଳ ହୋଇଥିବେ । ମୋର କେଶ ନିକରେ । ଲେଖୁ
ଥିବେ ନଖର ଶିଖର ମାନଙ୍କରେ । ନବଉ ହେବାର ଉରଜ
ଯୁଗଳରେ ॥ ୫ ॥ ଧ୍ୱନି ଯୁକ୍ତ ହେବା ରତ୍ନ ନୂପୁର । ସୁନ୍ଦର ହୋଇ
ଥିବ ମୋ ପଦକୁ । ସେ ହରି ପରି ପୂରିତ କରୁଥିବେ । ସୁରତ
ମାନଙ୍କର ବିସ୍ତାରକୁ । ହୋଇ ଉଦ୍ଦାମରେ ସ୍ୱନକୁ ବାରଂବାର ।
କରୁଥିବେ ଏ ମେଖଳା ଦାମ ମେ ହରି । ସେ ରସିକ ଶେଖର ଚତୁର
ଯର ମୋର । ଅଶେଷ ଚୁମ୍ବନ ମାନଙ୍କୁ ବହିବେ ॥ ୬ ॥ ରତି
ସୁଖରୁ ଉତ୍ପତ୍ତି ହୋଇଥିବାର । ରସରେ ହୋଇଥିବ ଅଳସିତ ।
ସେ ସମୟରେ ଦର ବିକଶିତ ପଙ୍କଜ । ପରିରେ ହୋଇଥିବ ତାଙ୍କ
ନେତ୍ର । ମୋର ଅସହମାନ ହେବାରେ ନିପତନ । ହୋଇ ଯିବ
ସକଳ ତନୁଲତା ବହନ । ଏପରି ଆଚରଣ ଦେଖି ସେ ମଧୁହନ ।
କାମ ଅଭିଳାଷକୁ ଉଦୟ କରିଦେବେ ॥ ୭ ॥ ମଦନସୁନ୍ଦର ରୂପ
ମନୋହର । ସେ ହରିଙ୍କ ସୁରତ ସୁଚରିତ । ମୃଦୁଳ ଭାଷିଣୀ

ବୃଷଭାନୁ ନନ୍ଦନୀ । କହିବା ଅନୁଚିନ୍ତା କଥାମୃତ । ନିରତେ ପାନକରି । ଦ୍ୱିଜ ଗଉର ହରି । ହରଷକର ଚିତ୍ତ କହେ ଏରସ ସେଗୀତ । ଆହେ ସୁଜନଜନେ ପ୍ରୀତକି ବହିମନେ । ମଧୁର ସ୍ୱନ କରିଗାନ କରି ସନ୍ତତେ ॥ ୮ ॥



ହସ୍ତସ୍ରସ୍ତବିଳାସବଂଶମନୃଜୁଭ୍ରୂବଲ୍ଲୀମଦ୍ବଲ୍ଲବୀ—
ବୃନ୍ଦୋତ୍ସାରିଦୃଗନ୍ତବୀକ୍ଷିତମତିସ୍ୱେଦାର୍ଦ୍ରଗଣ୍ଡସ୍ଥଳଂ ।
ମାମୁଦ୍ବୀକ୍ଷ୍ୟବିଲକ୍ଷିତଂସ୍ମିତସୁଧାମୁଗ୍ଧାନନଂକାନନେ ।
ଗୋବିନ୍ଦଂବ୍ରଜସୁନ୍ଦରୀଗଣବୃତଂପଶ୍ୟାମିହୃଷ୍ୟାମିଚ ॥ ୦ ॥

ରାଗ ମାରୁଆ । ଅଷ୍ଟତାଳ ॥

ସଖିରେ ଶ୍ରୀବୃନ୍ଦାବନରେ ଶ୍ୟାମସୁନ୍ଦର ।
ତାଙ୍କୁ ଦେଖି ଆନନ୍ଦିତ ହେଉଛି ମନ ମୋହର ॥ ୧ ॥
ଗୋପାଙ୍ଗନା ମାନଙ୍କରେ । ବେଷ୍ଟିତ ହୋଇ ସଖୀରେ ।
ଖସିପଡୁଛି ଶ୍ରୀକରୁ ଲୀଳାବଂଶୀ ତାହାଙ୍କର ॥ ୨ ॥
କୁଟିଳ ଭ୍ରୂଲତା ମତ । ଏମନ୍ତପେ ଗୋପୀତତ ।
ଠାରୁ ଉତ୍ସାହ ହୋଇଛି ନୟନାନ୍ତ ପୁରୁତର ॥ ୩ ॥
ମୋତେ ସ୍ୱେଦ ବିଶେଷରେ । ଭୟକୁ ଲଭି ମନରେ ।
କପୋଳ ଯୁଗଳେ ଝାଳ ହୋଇଅଛି ଜର ଜର ॥ ୪ ॥
ପ୍ରାପ୍ତ ହେବା ବିଲକ୍ଷଣ । ସ୍ମିତରେ ହୋଇ ନିମଗ୍ନ ।
ହାସାମୃତରେ ବଦନ ଦିଶେ ଅତି ମନୋହର ॥ ୫ ॥
କହେ ଦ୍ୱିଜଗୌରହରି । ଶୁଣ ଆଗୋ ସହଚର ।
ସ୍ମିତ ସ୍ମିତକରେ ପୂରି ରହିଲା ଅକ୍ଷିମୋହର ॥ ୬ ॥



ଦୁରାଲୋକଃସ୍ତୋକସ୍ତବକନବକାଶୋକଲତିକାବିକାଶଃ
କାସାରୋପବନପବନୋଽପି ବ୍ୟଥୟତି ।
ଅପି ଭ୍ରାମ୍ୟଦ୍ଭୃଙ୍ଗୀରଣିତରମଣୀୟା ନ ମୁକୁଳ —
ପ୍ରସୂତିଶ୍ଚୂତାନାଂ ସଖି ଶିଖରିଣୀୟଂ ସୁଖୟତି ॥ ୦ ॥

ରାଗ ଆହାରୀ । ଅଠତାଳ ।

ଭସ୍ମ ହେଉଛୁ ମୋଚନ୍ଦ୍ରକୁ ଗୋ । ପ୍ରାଣସଙ୍ଗିନି ॥ ପଦ ॥
ରମଣି ମଣି । ଶୁଣମୋ ବାଣୀ । ଏବସନ୍ତ ଋତୁ ଉଦ୍ୟମକୁ ॥ ୧ ॥
ଅଳପ ହୋଇଛୁ ଗୁଚ୍ଛକୁ ବନ୍ଧିବାର ଅଶୋକ କଳିକା ବିକାଶକୁ ॥ ୨ ॥
ମୋସରୋବର ଉପବନର । ସହିତ ହେବାର । ଶୀତଳବାତକୁ ॥ ୩ ॥
ଲଙ୍ଗୀନକର । ଗୀତେ ଭ୍ରମର ହେବାରସାଳ ମୁକୁଳ ଶିଖରକୁ ॥ ୪ ॥
କହେ ଗଉରହରି ସେବକ ବରଣୀ ଶ୍ରୀମତୀ ବିରହ ଜ୍ୱରକୁ ॥ ୫ ॥



ସାକୂତସ୍ମିତମାକୁଳାକୁଳଗଲଦ୍ଧମ୍ମିଲ୍ଲମୁଲ୍ଲାସିତ-
ଭ୍ରୂବଲ୍ଲୀକମଲୀକଦର୍ଶିତଭୁଜାମୂଲାର୍ଦ୍ଧଦୃଷ୍ଟସ୍ତନଂ ।
ଗୋପୀନାଂ ନିଭୃତଂ ନିରୀକ୍ଷ୍ୟ ଗମିତାକାଂକ୍ଷଶ୍ଚିରଂ ଚିନ୍ତୟନ୍-
ନନ୍ତର୍ମୁଗ୍ଧମନୋହରଂ ହରତୁ ବଃ କ୍ଲେଶଂ ନବଃ କେଶବଃ । ୦ ।

ଇତିଶ୍ରୀ ଭାଷା ସଙ୍ଗୀତ ବିନୋଦ ଗୌରହରି କୃତ ଦ୍ୱିତୀୟଃ ସର୍ଗଃ ।



ତୃତୀୟଃ ସର୍ଗଃ ।

କଂସାରିରପି ସଂସାରବାସନାବଦ୍ଧଶୃଙ୍ଖଳାଂ ।
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀଃ ॥ ୦ ॥

ରାଗ ଏରକୁଲ୍ଲିକାମୋଦ । ଆଦିତାଳ ॥

ହେଲେହେଁ କଂସାରି ଗିରିବର ଧାରୀ ।
ଶ୍ରୀହରି ସଂସାର ବାସନା ବନ୍ଧନରେ ପୂରି ॥ ପଦ ॥
ଶୃଙ୍ଖଳା ପରି ଅଟନ୍ତି ଯେ ଶ୍ରୀମତୀ ।
ଧରି ତାଙ୍କୁ ଅନ୍ତର ହୋଇ ଚଳେ ଝଟତି ॥ ୧ ॥
ଗପୋସବେ ଉତ୍କଣ୍ଠିତ ଥିଲୁ ପୂରି ।
ପ୍ରତିବନ୍ଧ ଅଟନ୍ତି ଗୋଲୋକେଶ୍ୱରୀ ॥ ୨ ॥

ଏମନ୍ତ ରାଧାଙ୍କଠାରେ ଥିଲା ଚିତ୍ତ ।
ପରିତ୍ୟାଗ କଲେ ସେ ଗୋପିକା ଯୂଥ ॥ ୩ ॥
ହ୍ଲାଦିନୀ ଶକ୍ତି ବୃଷଭାନୁ କିଶୋରୀ ।
ଦ୍ୱିଜ ଶିବେ କହେ ଭଜ ଗୌରହରି ॥ ୪ ॥

—※—

ଇତସ୍ତତସ୍ତାମନୁସୃତ୍ୟ ରାଧିକାମନଙ୍ଗବାଣଷିନ୍ନମନସଃ ।
କୃତାନୁତାପଃ ସ କଳିନ୍ଦନନ୍ଦିନୀତଟାନ୍ତକୁଞ୍ଜେ ବିଷାଦ ମାଧବଃ ।

ରାଗ ଆନନ୍ଦ ଭୈରବ । ଆଦି ତାଳ ॥

ସେବର ନାଗର । ଅତି କାତର । ବନ୍ଧୁ କହେ ଏଭିର ॥ ୦ ॥
ପ୍ରେମ ଭଙ୍ଗ ହେବାରୁ ରାଧାଙ୍କର ।
ଜନିତ ହେଲା ଚିନ୍ତାକୁଳିତ ଅପାର ।
ତେଣୁ ମୀନକେତନ ଶରରେ ଜର ଜର ।
ମରମ ବ୍ୟଥା ରଖି ନହେଲା ହୃଦସ୍ଥିର ॥ ୧ ॥
କେତେତ ଅତନୁର ମୁଁ କଲି ମନ୍ଦପଣକୁ ।
ଶିରୀଷ କୁସୁମ କୋମଳାଙ୍ଗୀ ଶ୍ରୀରାଧାଙ୍କୁ ।
କୁଳିଶରୁ କଠିନ ଘନ ତାଡ଼ନକୁ ।
ଚଧାନକଲି ଯେ ଦେଖିବ କେତେତ ଦେଳକୁ ॥ ୨ ॥
କହେ ଗଉର ହରି । ଚିନ୍ତାମନରେ ଧରି ।
ବିପିନ ପ୍ରତିଦର ପ୍ରତି କୁଞ୍ଜକୁ ହେରି ।
ନଦେଖି ସେ ରାଧାଙ୍କୁ ଅତି ବିଷାଦ କରି ।
ଯମୁନାତଟ ନିକୁଞ୍ଜ ରେ ବସିଲେ ହରି ॥ ୩ ॥



ମାମିୟଂ ଚଳିତା ବିଲୋକ୍ୟ ବୃତଂ ବଧୂନିଚୟେନ ।
ସାପରାଧତୟା ମୟାପି ନ ନିବାରିତାତିଭୟେନ ।
ହରିହରି ହତାଦରତୟା ଗତା ସା କୁପିତେବ । ଧ୍ରୁବଂ ॥ ୧ ॥

କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।
କିଂ ଧନେନ ଜନେନ କିଂ ମମ ଜୀବିତେନ ଗୃହେଣ । ୨ ।
ଚିନ୍ତୟାମି ତଦାନନଂ କୁଟିଲଭ୍ରୁ କୋପଭରେଣ ।
ଶୋଣପଦ୍ମମିବୋପରି ଭ୍ରମତାକୁଳଂ ଭ୍ରମରେଣ । ୩ ।
ତାମହଂ ହୃଦି ସଙ୍ଗତାମନିଶଂ ଭୃଶଂ ରମୟାମି ।
କିଂ ବନେଽନୁସରାମି ତାମିହ କିଂ ବୃଥା ବିଲପାମି । ୪ ।
ତନ୍ୱି ଖିନ୍ନମସୂୟୟା ହୃଦୟଂ ତବାକଳୟାମି ।
ତନ୍ନ ବେଦ୍ମି କୁତୋ ଗତାସି ନ ତେନ ତେଽନୁନୟାମି । ୫ ।
ଦୃଶ୍ୟସେ ପୁରତୋ ଗତାଗତମେବ ମେ ବିଦଧାସି ।
କିଂ ପୁରେବ ସସମ୍ଭ୍ରମଂ ପରିରମ୍ଭଣଂ ନ ଦଦାସି । ୬ ।
କ୍ଷମ୍ୟତାମପରଂ କଦାପି ତବେଦୃଶଂ ନ କରୋମି ।
ଦେହି ସୁନ୍ଦରି ଦର୍ଶନଂ ମମ ମନ୍ମଥେନ ଦୁନୋମି । ୭ ।

ରାଗ କାମୋଦ । ତ୍ରିପୁଟା ତାଳ ॥

ଚାହାଁ ହତାଦର କରିସେ କିଶୋରୀ ।
ଗଲେ ହୃଦସ୍ଥରେ ବିମୁଖ ହେଲାପରି ॥ ପଦ ॥
ମୋତେ ଏଗଧ' ସଖୀଗଣ ବେଷ୍ଟିତ ଦେଖି ।
ଶଙ୍କେ ପରୁଷ ରଷି ଗଲେ ଚଳି ।
ସ୍ୱୟଂ କୃତାପରାଧ । ସକାଶରୁ ମମଧ ।
ବାରଣ ନକଲି ଲଜ୍ଜା ଅତ ଘୋଟକି ॥ ୧ ॥
ସେ ରାଧା ଅପାର । ତରଣତରହନ୍ତୁ କକରବେ କବାକନ୍ଥୁଥିବେ ।
ଏ ମୋହର ଧନ । ଜନ ସୁଖ ସଦନ ।
କେଉଁ ଅବା କାରଣ ହେବ ତାଙ୍କ ଅଭାବରେ ॥ ୨ ॥
ରୋଷରୁ କୁଟିଳତା । ଲଭିବାରୁ ଭ୍ରୂଲତା ।
ମୁଖକୁ ମୁଁ ସଦା ଚିନ୍ତାକଲି ।
ଉପର ପ୍ରଦେଶରେ । ଭ୍ରମିବା ଭ୍ରମରେ ।
ଆକୁଳିତ ହେବା ଶୋଣ ପଦ୍ମ ପରିରେ ॥ ୩ ॥
ଶଙ୍କେ ସଙ୍ଗତ ହୋଇ ।- ଛନ୍ତିତ ପ୍ରାଣସଖୀ ।

ଅଛିଟମ୍ଭୁ ଚନ୍ଦ୍ର ମୁଁଢାଣ୍ଡିବ ।
ତନ୍ କେଉଁ କାରଣେ କଣ୍ଠକାଦ ଅରଣ୍ୟ ।
କେତକୁଆ କପା ପରଦାନ କରନ୍ତ । ୪ ।
ହେ ପ୍ରେମ ବନ୍ଧୁର । ଅନ୍ୱେଷଣେ କାତର ।
ହୋଇଛି ମୁଁ ମେହର ପ୍ରରତରେ ।
କର ଗଡା ଘଠ । ସୁଧୀରେ କପା ଘତ ।–
ପର ଫଳବନ୍ତ ନଦଥ ସଂଭ୍ରମରେ । ୫ ।
ହେ ଡନ୍ଧୁ ତେମନ । ଡିବସେ ଅଠ ଖିନ୍ନ ।
ହେଲି ପରରେ ମୁଁ ମଣୁଅଛି ।
ନ ଜଣେ କେଉଁ ଠାକୁ । ଗମୁଛ ପ୍ରସନ୍ନକୁ ।
କରବାରେ ମନ । ହରତେ ବଳୁଅଛି । ୬ ।
ହେ ସୁନ୍ଦର ରୂପେ । କ୍ଷମା କର ମୁଁ କେତେବ ।
ଜଣ୍ଡା ନ ହୁଁ ଅପରାଧକୁ ।
ମୋତେ ହୋଇ ସଦୟ । ବରେ ଦର୍ଶନ ଦିଅ ।
ମଦନ ବାଣେ ମୁଁ ପଡୁଅଛି କଦନକୁ । ୭ ।
ହେ ଶ୍ୟାମସୁନ୍ଦର । ଅତି ମନୋହର ।
ଅନୁଶଳ୍ପ ଜର ଚନ୍ଦ୍ରଚନ୍ଦେ ।
କହେ ଧିଜ ଗନ୍ଧରବର, ହେସାଧୀର ।
ନରତେ ଗାନକର । ବନ୍ଧୁ ହେତ ସନ୍ତୋଷେ । ୮ ।

—❊❊—

ହୃଦ ବିସଲତାହାରୋ ନାୟଂ ଭୁଜଙ୍ଗମ ନାୟକଃ ।
କୁବଳୟଦଳଶ୍ରେଣୀ କଣ୍ଠେନ ସା ଗରଳଦ୍ୟୁତିଃ । ୮ ।
ମଳୟଜ ରଜୋ ନେଦଂ ଭସ୍ମ ପ୍ରିୟାରହିତେ ମୟି ।
ପ୍ରହର ନ ହରଭ୍ରାନ୍ତ୍ୟାନଙ୍ଗ କ୍ରୁଧା କିମୁ ଧାବସି । ୯ ।

ରାଗ କାମୋଦ । ଆଦି ତାଳ ।।
ସ୍ମର ନ ମର ତେତକନ୍ଧ ଚନ୍ଦ୍ର । ହର ଭ୍ରମ ନକର ।
ମୋ ଠାରେ କଂଟକ ।
କାନ୍ତବିଚ୍ଛେଦୀ ମୁହିଁ । କାନ୍ତ ସହିତ ସେହୁ ।
ସନ୍ତାପକୁ ଦେଉଅଛି କପା ଏତେ । ୧ ।

ଉରରେ ମୃଣାଳ ଲତିକା ଏହି ।
ଶଶଧର ଅବା ଶୋଭିଲୁ ସେ ଦହଇ ।
ନୀଳ ଉତ୍ପଳ ଦଳ । ଶଳେ ନେତ୍ର ଶରଳ ।
ମନସିଜ ଏନୋହେ ଉଗ୍ର ସତେ ।। ୨ ।।

...—...

ପାଣୌମା ଲୁଳ ଚୂତଶାଖିକମମୁଂ ମା ଶ୍ରୁପମାଂ ବ୍ରୋପଯ୍ ।
କ୍ରୀଡାନର୍ତ୍ତିତବର୍ଣ୍ଣମୁଚ୍ଛିତଜନାପାଡେନ ତ୍ଵଂ ଜୌବୁଷଂ ।। ୧୦ ।।
ତସ୍ୟା ଏବ ମୃଗୀଦୃଶୋ ମନସିଜପ୍ରେଷତ୍କଟାକ୍ଷ ଶୁଗ-
ଶ୍ରେଣୀଜର୍ଜ୍ଜରିତଂ ମନାଗପି ମନୋ ନାଦ୍ୟାପି ସନ୍ଧୁକ୍ଷତେ ।। ୧୧ ।।

ରାଗ ସ୍ୱୋଚମଲ୍ଲାର । ଆଦି ତାଳ ।।

ମାର ଚୂତ ଶର କରତେ ନ ଧରରେ ।
ଧରିଲେ ଧନୁରେ ସନ୍ଧାନ ନ କରରେ ।। ପଦ ।।
ହେ କ୍ରୀଡା ନର୍ତ୍ତିତ ଜଗତ । ହୋଇଛୁପ ଅତ ଅଚେତ ।
ଏପରି ଜନେ ଜଳେ ଆଘାତ ତହିଁରୁ ଅଛୁ କେଉଁ ପୁରୁଷାର୍ଥ ୧
ସେ ମୃଗ ନୟନା ଶ୍ରୀରାଧାର । ତରଳ କଟାକ୍ଷ ଶର ନିକର ।
ଜରିବାରୁ ଅଙ୍ଗଲୁ ଜର ଜର । ଅଦ୍ୟାପି ହୋଇନାହିଁ ।-
ମନ ସ୍ଥିର ।। ୨ ।।



ଭ୍ରୂ ପଲ୍ଲବ ଧନୁରପାଙ୍ଗତରଙ୍ଗିତାନ
ବାଣା ଗୁଣଃ ଶ୍ରବଣପାଳିରିତି ସ୍ମରେଣ ।
ତସ୍ୟାମନଙ୍ଗଜୟଜଙ୍ଗମଦେବତାୟା
ମସ୍ତ୍ରାଣି ନିର୍ଜ୍ଜିତଜଗନ୍ତି କିମର୍ପିତାନ ।। ୦ ।।

ରାଗ ଉଦୟୁରବନାଟ । ଆଦି ତାଳ ।।

ଜସ୍ମ କର ତନ ପୁରକୁ ହରଣକୁ ବନ୍ଧ ।
ରଥା ଅଙ୍ଗେ ରଖି ଅଛୁ ଅସ୍ତ୍ର ଗଣକୁ ।। ପଦ ।।
ଅତ କୁଟିଳ ହେବାର । ଭ୍ରୂଲତାରେ ତାହାର ।
ରଖିଛୁ ନ ଶେସନକୁ ।। ୧ ।।

ତରଙ୍ଗ ଜଟାପ ନେଇ   ଦେଉ ଅଛୁ ମିଶାଇ ।
ଜଗ କର ଶାନ୍ତ ଶରୀରୁ ।୨।
ଅତି ସୁନ୍ଦର ଗ୍ରୀବା । ଗର୍ବ ହରରେ ମଦନ ।
ଯାତନେ ରଖିଲି ପ୍ରାଣକୁ ।୩।
ମୃଦୁ ଗର ରସାଗାର । ଅଟେ କର୍ପୂର ମଧୁର ।
ଗୌରିହର କହେ ଗୌରକୁ ।୦।

—०※०—

ଭ୍ରୂଚାପେ ନିହିତଃ କଟାକ୍ଷବିଶିଖୋ ନିର୍ମାତୁ ମର୍ମବ୍ୟଥାଂ
ଶ୍ୟାମାତ୍ମା କୁଟିଳଃ କରୋତୁ କବରୀଭାରୋଽପି ମାରୋଦ୍ୟମଂ ।
ମୋହଂ ତାବଦୟଞ୍ଚ ତନ୍ୱି ତନୁତାଂ ବିମ୍ବାଧରୋ ରାଗବାନ୍
ସଦ୍ବୃତ୍ତସ୍ତନମଣ୍ଡଳ ସ୍ତବ କଥଂ ପ୍ରାଣୈର୍ମମ କ୍ରୀଡତି ।୦।

ରାଗ ଆହାରୀ । ଆଦି ତାଳ ॥

ଆହା ତୋର କୋମଳାଙ୍ଗି । ମୋ ପ୍ରାଣ ସଙ୍ଗି ॥ ପଦ ॥
ଭୂରୁ ଧନୁରେ ସନ୍ଧାନ । କରୁଣ କଟାକ୍ଷ ବାଣ ।
ମୋର ମନର କଦନ । କରୁ ଯେତେ ସେ ନିର୍ମାଣ ॥ ୧ ॥
ଅତି ଶ୍ୟାମଳ କୁଟିଳ । ହେବା କବରୀ ଭାର ।
ଉଦ୍ୟମ କରୁ ତ୍ରିପୁର । ଅରଜନ୍ମ ପଞ୍ଚବାଣର ॥ ୨ ॥
ରାଗ ମତ୍ତ ହେବାର । ସୁନ୍ଦର ବିମ୍ବାଧର ।
ଅତି ମୋହକୁ ବିସ୍ତାର । କରୁ ଶୀଘ୍ରରେ ମୋହର ॥ ୩ ॥
ସ୍ଥିରତର ହେବାର । କୁଚ ମଣ୍ଡଳ ତୋହର ।
କପାଇଁ ପ୍ରାଣକୁ ମୋର । ଖେଳ କରୁଛି ବିହାର ॥ ୪ ॥
ଶ୍ରୀହର ଅନୁଚିନ୍ତିତ । ବଚନ ମଧୁରମୃତ ।
ତାହେ ଗୌରିହର ଚିତ୍ତ । ତୋଷେ କହେ ଏହୁଗୀତ ॥ ୫ ॥

—※—

ତାନି ସ୍ପର୍ଶସୁଖାନି ତେ ଚ ତରଳାଃ ସ୍ନିଗ୍ଧା ଦୃଶୋର୍ବିଭ୍ରମା-
ସ୍ତଦ୍ବକ୍ତ୍ରାମ୍ବୁଜସୌରଭଂ ସଚ ସୁଧାସ୍ୟନ୍ଦୀ ଗିରାଂ ବକ୍ରିମା ।

ସା ବିମ୍ବଗମାଧୁର୍ଯ୍ୟତ ବୃଷ୍ଟ୍ୟୁ ସଙ୍କେତେପି ଚେତ୍ମାନସଂ
ତସ୍ୟାଂ ଲଗ୍ନପରାସ୍ଥ ଦୃଷ୍ଟ ବନ୍ଧବନ୍ଧ୍ୟାଃ କଥଂ ବର୍ଣ୍ଣ୍ୟତେ ॥ ୦ ॥

ରାଗ ମଲୁଆ । ଆଡ ତାଳ ।

ହେ କଂସାରିଙ୍କ ଠାରେ । ଯେତେବେ ଚଉ ଛିଡାରେ ।
ଲଜ୍ଜା ଦୂର ଧିହେଲା ନିର୍ଜନରେ ।
ତେତେବେ କଣ୍ଠ ଏଣିବନ୍ଧ । ବ୍ୟାଧିମନେ ମୋତେ ।
ପ୍ରବର୍ତ୍ତନ ହୋଇ ଅଛନ୍ତି ଏଣଗିରତେ ॥ ୧ ॥

ସେ ପୂର୍ଣ୍ଣ ଅନୁଭବ । ଶ୍ରୀବ ଅବସ୍ଥବ ।
ସରସ୍ୱ ସୁଖ ହେତୁ ଅଛି ସେତେନ ।
ସେ କନ୍ଦନ ବିଳାସ । ମଣି ପଦ୍ମ ସୁବାସ ।
ଅନୁକ୍ଷଣେ ଭାବନା ହୋଇଛି ମୋ ଚିତ୍ତେ ॥ ୨ ॥

ସୁଧା ନିଷ୍ୟନ୍ଦନ । ସ୍ନେହ ବଚନ ରଚନ ।
ବିମ୍ବାଧର ସୁଶୋଭିତ ।
ଇତ୍ୟାଦି ଓଷ୍ଠପୁଟର । ଇନ୍ଦ୍ରିୟ ନିଚୟରେ ।
ସୁଖ ସମ୍ପାଦନରେ । ହୋଉଛି ଲୋଭିତ ॥ ୩ ॥

ହେ ମଧୁସୂଦନ । ଏପରିରେ ବଚନ ।
କହିଲେ ଯାହା ରଚନ ହୃଦେ ସ୍ମର ।
ଦ୍ୱିଜ ଗୌରହରି । ଗୀତ ପ୍ରବନ୍ଧ କରି ।
ଅତି ମଧୁର ତରେ ରଚନା କଲେ ଏପରି ॥ ୪ ॥

—*—

ତିର୍ଯ୍ୟକ୍‌କଣ୍ଠବିଲୋଳମୌଳିତରଳୋତ୍ତଂସସ୍ୟ ବଂଶୋଚ୍ଚର-
ଦ୍ଗୀତିସ୍ଥାନକୃତାବଧାନଲଲନାଲକ୍ଷୈର୍ନ ସଂଲକ୍ଷିତାଃ ।
ସଂମୁଗ୍ଧଂ ମଧୁସୂଦନସ୍ୟ ମଧୁରେ ରାଧାମୁଖେନ୍ଦୌ ମୃଦୁ-
ସ୍ପନ୍ଦଂ କନ୍ଦଳିତାଶ୍ଚିରଂ ଦଧତୁ ବଃ କ୍ଷେମଂ କଟାକ୍ଷୋର୍ମୟଃ ॥ ୦ ॥

—...—

ଇତି ଭାଷାସଙ୍ଗୀତ ବିନୋଦ ଗୌରହରି କୃତ ଦ୍ୱିତୀୟ ସର୍ଗଃ ।

## ଚତୁର୍ଥଃ ସର୍ଗଃ ।

ଯମୁନାତୀରବାନୀରନିକୁଞ୍ଜେ ମନ୍ଦମାସ୍ଥିତଂ ।
ପ୍ରାହ ପ୍ରେମଭରୋଦ୍ଭ୍ରାନ୍ତଂ ମାଧବ ରାଧିକାସଖୀ । ୦ ।

ରାଗ ରେଟୁପ୍ତି । ଅଷ୍ଟ ତାଳ ॥

କଳିନ୍ଦ ନନ୍ଦନୀ ତଟରେ । ଅତି ଶୀତଳ । କୁଞ୍ଜ ମନ୍ଦିରେ ।
ରାଧା ପ୍ରେମରେ । ଚଞ୍ଚଳ ଚିତ୍ତରେ ।
ବସିଛନ୍ତି ତହିଁ ଶ୍ୟାମ ସୁନ୍ଦରେ ॥ ୧ ॥
ପ୍ରେମ ପୂର୍ଣ୍ଣା ରାଧା ସଖୀ । ତାଙ୍କ ବିରହ ବେଦନା ଦେଖି ।
କାନ୍ତ ସଂମେଳନ କରିବାରେ । ଯତ୍ନ ହୋଇ ଯାଇ ।
କହନ୍ତି ତାଙ୍କୁ ନିରେଖି ॥ ୨ ॥

—o—

ନିନ୍ଦତି ଚନ୍ଦନମିନ୍ଦୁକିରଣମନୁବିନ୍ଦତି ଖେଦମଧୀରଂ ।
ବ୍ୟାଳନିଳୟମିଳନେନ ଗରଳମିବ କଳୟତି ମଳୟସମୀରଂ
ସା ବିରହେ ତବ ଦୀନା　　　　ଧ୍ରୁବ ॥ ୦ ।
ମାଧବ ମନସିଜବିଶିଖଭୟାଦିବ ଭାବନୟା ତ୍ୱୟି ଲୀନା ।
ଅବିରଳନିପତିତମଦନଶରାଦିବ ଭବଦବନାୟ ବିଶାଳଂ ।
ସ୍ୱହୃଦୟମର୍ମଣି ବର୍ମ କରୋତି ସଜଳନଳିନୀଦଳଜାଳଂ । ୧ ।
କୁସୁମବିଶିଖଶରତଳ୍ପମନଳ୍ପବିଳାସକଳାକମନୀୟଂ ।
ବ୍ରତମିବ ତବ ପରିରମ୍ଭସୁଖାୟ କରୋତି କୁସୁମଶୟନୀୟଂ । ୨ ।
ବହତି ଚ ବଳିତବିଲୋଚନଜଳଧରମାନନକମଳମୁଦାରଂ ॥
ବିଧୁମିବ ବିକଟବିଧୁଂତୁଦଦନ୍ତଦଳନଗଳିତାମୃତଧାରଂ । ୩ ।
ବିଳିଖତି ରହସି କୁରଙ୍ଗମଦେନ ଭବନ୍ତମସମଶରଭୂତଂ ।
ପ୍ରଣମତି ମକରମଧୋ ବିନିଧାୟ କରେ ଚ ଶରଂ ନବଚୂତଂ । ୪
ପ୍ରତିପଦମିଦମପି ନିଗଦତି ମାଧବ ତବ ଚରଣେ ପତିତାହଂ ।
ତ୍ୱୟି ବିମୁଖେ ମୟି ସପଦି ସୁଧାନିଧିରପି ତନୁତେ ତନୁଦାହଂ ।୫
ଧ୍ୟାନଲୟେନ ପୁରଃ ପରିକଳ୍ପ୍ୟ ଭବନ୍ତମତୀବ ଦୁରାପଂ ।
ବିଳପତି ହସତି ବିଷୀଦତି ରୋଦିତି ଚଞ୍ଚତି ମୁଞ୍ଚତି ତାପଂ । ୬ ।

## ରାଗ ମୁଖାରୀ । ଅଠ ତାଳ ।

ଖଣ୍ଡେହି ମାଧବ ସେ ଶ୍ରୀମନ୍ତ ଭୃତ୍ୟ ।
ବିରହରେ ଦନ୍ତ ହାନ ମଦନ ଖାଉଛୁ ॥ ପଦ ॥
ନନ୍ଦାକର ଚନ୍ଦନ । ଚନ୍ଦ୍ରମା କିରଣ । ଅଧୀର ବଧିକି ପାଉଛନ୍ତି ।
ଝିଲ୍ଲୀଙ୍କ ଝଙ୍କାର । ମିଳନ ହେବାର ।
ମଳୟ ବାତ, ବିଷସମ ମଣୁଛନ୍ତି ॥ ୧ ॥
ଅନ୍ତରରେ ନିପତନ । ହେବାର ମଦନ ବାଣରୁ ତାର ଅନବରତରୁ ।
ବିଶାଳ ଅଳକ । କଳକର ଦଳ ।
ଜଳ ହୃଦ ସ୍ଥଳେ କବଚ କରିଛନ୍ତି ॥ ୨ ॥
ମୀନ କେତନ ଶର । ଧୈର୍ଯ୍ୟାବୃତ ପର । ଭୃଙ୍ଗ ପଦରଙ୍କୁ ଯୁଝନ୍ତି ।
ବିଳମ୍ବ କଳା କମଳାସ୍ତ୍ର କୁସୁମ ।
ତଳପ କେବଳ ରଚନା କରୁଛନ୍ତି ॥ ୩ ॥
ଅତି ମନୋହର । ମୁଖ ଚନ୍ଦ୍ର ତାହାର । ଗଳିତ ହୋଇଛି ନେତ୍ରଜଳ ।
ବସୁଛି ଅନ୍ୟନ୍ତ । ବିକଟ ରାହୁ ଦନ୍ତ ।
ପାଠେ ବିଗଳିତ ସୁଧା ଝଣେ ସମାନ ॥ ୪ ॥
ଏକାନ୍ତ ସ୍ଥଳରେ । ମୃଗମଦ ରାଶିରେ । ତୁମ୍ଭଙ୍କ ମୂରତି ଲେଖୁଛନ୍ତି ।
ତଳି ପ୍ରଦେଶରେ ମକର । ଲେଖିକରେ ।
ବୃନ୍ତ ଶର ଦେଇ ପ୍ରଣାମ କରୁଛନ୍ତି ॥ ୫ ॥
ସେ ନବକିଶୋରୀ । ପଦତଳେ ପଡ଼ି ପ୍ରଣିପାତ ଏପରି କହୁଛନ୍ତି ।
ତୁମ୍ଭେ ମୋଠାରେ । ରୋଷ ବନ୍ଧୁ ବାରେ ।
ହିମକର ହେଲେ ମୋତନକୁ ଦହୁଛି ॥ ୬ ॥
ସେଥିରୁ ଅନ୍ତରେ । ତୁମ୍ଭଙ୍କୁ ଧ୍ୟାନରେ । ସେତ ପୁରତରେ ଦେଖୁଛନ୍ତି,
ବିଳାସ ହାସକୁ । ବିଷାଦ ବେଦନକୁ ।
ବସ୍ତୁତ ହୋଇ ତାପ ଦୂର କରୁଛନ୍ତି ॥ ୭ ॥
କହେ ଦ୍ୱିଜ ଗଉର । ହରି ଜନେ ତୁମ୍ଭର । ମାନସକୁ ଅତିସ୍ଥିରକର ।
ସେ ହରି ସରସ । ସୁମଧୁର ରସ ।
ପାନେ ମନ ତୋଷ କର, ଗାନ କର ॥ ୮ ॥



ଅବାସୋ ବିପିନାୟତେ ପ୍ରିୟସଖୀମାଲାପି ଜାଲାୟତେ ।
ତାପୋଽପି ଶ୍ୱସିତେନ ଦାବଦହନ ଜ୍ୱାଳାକଲାପାୟତେ ।
ସାପି ତ୍ୱଦ୍ବିରହେଣହନ୍ତ ହରଣୀରୂପାୟତେ ହା କଥଂ ।
କନ୍ଦର୍ପୋଽପି ଯମାୟତେ ବିରଚୟନ୍ ଶାର୍ଦ୍ଦୂଳବିକ୍ରୀଡିତଂ ॥ ୦ ॥

ରାଗ ଭୈରବୀ । ଆଡ ତାଳ ॥

ଶୁଣହେ ମୋହନ । ବଚନ୍ତୁ ମଣିନମତ ଗୀତ ନର୍ତ୍ତନ ।
ବିବିଧ ସୁଖ ସଂକୁଳ ହେବା ସଦନ ।
କଣ୍ଟକ ପାଷାଣରେ ସଂକୀର୍ଣ୍ଣ ।
ବନପର ମଣୁଛି ଶରୀରେ ଘେନ ॥ ୧ ॥
ବିରହିଦବୁ ଭୂମିର । ଭୂପ ଅଳଙ୍କାର ସମାନ ବଯ୍ସୀନକର ।
କହୁଛି ବେଢ଼ା ଜାଲ ପରକାର ।
ପ୍ରତି ପ୍ରତି ବଗରେ ହେ କିଶୋର ॥ ୨ ॥
ସୁହାଗରୁ ଭୂମିର । ଉଚିତ ହେବାର ।
ଶାନ୍ତ ଆଶ୍ୱାସ ହିମସାର । ଘନ ସାର ଚନ୍ଦନ ।
ଏ ଉପଚାରମାନ । ସଂସ୍ତବତ ହେବାର ସାନ୍ତ୍ୱନ ।
କଲେ ସନ୍ତାପ ନୋହେ ନିବାରଣ ॥ ୩ ॥
ଅନୁକ୍ଷଣେ ବର ।- ବରମ୍ବ ଯେ ତାର ।
ବେଦନା ହେଲାନ ଅପାର ।
ବିଶେଷେ ତପତ ନିଃଶ୍ୱାସ ପ୍ରଭଞ୍ଜନ । ବିପିନ ବହ୍ନିର ସମାନ ।
ଜାଳେ ଦେଉଛି ତାହା ଅପଘନ ॥ ୪ ॥
ତବ ଚନ୍ତାରେ କର । ବୃଷଭାନୁ କୁମାରୀ ।
ହୋଇଛିତ ହରଣୀ ପର ମଦନ ଯମ ପର ।
ଶାର୍ଦ୍ଦୂଳ କ୍ରୀଡାକର । ଫିଙ୍ଗିଦିଅଇ ତାକୁ ଓଟାର ।
ସ୍ତୁତ ଶୁହେଁ ଆସି ମୋଦକୁ ଧର ॥ ୫ ॥
ଏହ୍ୱପର ଢାର । ଅପାର ଅନ୍ତର ।
ଦାୟାହୋଇଛି ହେ ଗୁଧାର । ମଣୁତ ଅଛି ଅତିବେଦରେ କାତର,
ଶୁଣ ଶୁଣ ମୁରଲୀଧର । କହେ ଗୌରହରି ଏହ୍ନାଗିର ॥ ୬ ॥

• • ~—• • •

ସ୍ତନବନିହିତମପିହାରମୁଦାରଂ ।
ସା ମନୁତେ କୃଶତନୁରିବ ଭାରଂ ।
ରାଧିକା ତବ ବିରହେ କେଶବ ॥ ୦ ॥ ଧ୍ରୁବ ॥
ସରସମସୃଣମପି ମଳୟଜପଙ୍କଂ ।
ପଶ୍ୟତି ବିଷମିବ ବପୁଷି ସଶଙ୍କଂ ॥ ୧ ॥
ଶ୍ୱସିତପବନମନୁପମପରିଣାହଂ ।
ମଦନଦହନମିବ ବହତି ସଦାହଂ ॥ ୨ ॥
ଦିଶି ଦିଶି କିରତି ସଜଳକଣଜାଳଂ ।
ନୟନନଳିନମିବ ବିଗଳିତନାଳଂ ॥ ୩ ॥
ନୟନବିଷୟମପି କିଶଳୟତଳ୍ପଂ ।
ଗଣୟତି ବିହିତ ହୁତାଶ ବିକଳ୍ପଂ ॥ ୪ ॥
ତ୍ୟଜତି ନ ପାଣିତଳେନ କପୋଳଂ ।
ବାଳଶଶିନମିବ ସାୟମଲୋଳଂ ॥ ୫ ॥
ହରିରିତି ହରିରିତି ଜପତି ସକାମଂ ।
ବିରହବିହିତମରଣେବ ନିକାମଂ ॥ ୬ ॥

ରାଗ ମାରୁଆ । ଅଟ ତାଳ ॥

ବିଚ୍ଛେଦରୁ ତୁମ୍ଭର । ପ୍ରେମ ତତପର । ହୋଇଛି ରାସେଶ୍ୱରୀ ।
ଉରେ ଥିବା ହାର । ହାର ତା ଶରୀର ।
ଖିନ୍ନରୁ ମଣେ ଭାର ହେ ଶ୍ରୀହରି ॥ ୧ ॥
ଦ୍ରବ ସୁଚିକ୍କଣ । ହେବାର ଚନ୍ଦନ । ଭୂଷଣେ ଯେ ତାହାକୁ ।
ଆପଣା ଶରୀରେ । ଶଙ୍କା ସହିତରେ ।
ଦେଖୁଛି ବିଷ ପରି ହେ ଶ୍ରୀହରି ॥ ୨ ॥
ଅଧିକ ହେବାର । ଉପମାର ସାର । ନିଃଶ୍ୱାସ ପବନକୁ ।
ଧରୁଛି ସନ୍ତତ । କାମ ବାତ. ହୋତ୍ର ।
ଶିଖା ସମୂହ ପରି ହେ ॥ ୩ ॥
ଦିଗ ମାନଙ୍କରେ । ବିକ୍ଷେପଣ କରେ । ସେ ନୟନ ନୀର କଣକୁ ।
ବିଶେଷରେ ଜଳ ।– କୁ ତଳରୁ ନାଳ ।
ଗଳିତ ହେଲା ପରି ହେ ଶ୍ରୀହରି ॥ ୪ ॥

କପୋଳକୁ ଚାଣି । ଚଳୁ ଏକକ୍ଷଣେ । ବରଜକୁତ ଚାହିଁ ରସବତୀ ।
ସାୟଂସନ୍ଧ୍ୟା କାଳ । ସ୍ୱସ୍ଥ ଅଚଞ୍ଚଳ ।
ତାଳ ଚନ୍ଦ୍ରକୁ ପର ହେବ ॥ ୫ ॥
ନମ୍ବୁକ ପଥରେ । ଦେଖିଲେ ସେ ଥରେ । ପଲ୍ଲବ ଶମ୍ବୁକକୁ ।
ମଣ୍ଟୁ ତଯାନ୍ତ । ହେଜାଇ ହୁତାଶନ ।
ସମାଧ ମନେ ଲେଖ ହେ ଶ୍ରୀହରି ॥ ୬ ॥
କହେ ଦୋରିହର । ଶ୍ରୀହରି ୬ । ଜପେ ହୃଦେ ସକାମନାକର ।
ଫଳହ ବନ୍ଧିତ । ମରଣ ପରତ ।
ଦଶ୍ମନ୍ତୁ ହେ ସୁନ୍ଦରୀ ହେବ ॥ ୭ ॥



ସା ରୋମାଞ୍ଚତଶୀତ୍କରୋତ ବିଲପତ୍ୟୁତ୍କମ୍ପତେ ତାମ୍ୟତି ।
ଧ୍ୟାୟତ୍ୟୁଦ୍ଭ୍ରମତି ପ୍ରମୀଳତି ପତତ୍ୟୁଦ୍ୟାତି ମୂର୍ଚ୍ଛତ୍ୟପି ।
ଏତାବତ୍ୟତନୁଜ୍ୱରେ ବରତନୁର୍ଜୀବେନ୍ନ କିଂ ତେ ରସାତ୍ ।
ସ୍ୱର୍ବୈଦ୍ୟପ୍ରତିମ ପ୍ରସୀଦସି ଯଦି ତ୍ୟକ୍ତୋଽନ୍ୟଥା ହସ୍ତକଃ ॥ ୧୦ ॥

ରାଗ କାମୋଦ । ଆଦି ତାଳ ।

ମାର ଜ୍ୱରରେ ଅଥିର ତାର ଶରୀର ।
ତୁମ୍ଭ ପ୍ରୀତି ପ୍ରଣୟକୁ । ଚେନ୍ତ ହୋଇଛି କାତର ॥ ପଦ ॥
ଆହେ ଅଶ୍ୱିନୀ କୁମର । ପଢ଼ ଚକିତ୍ସ କବର ।
ହେଉ ପ୍ରସନ୍ନ ଟବ୍ରୁ । ଉଦ୍ଧାର କର ।
ତବଧ ସେ ଉପଦ୍ରବ । ହୋଇଛି ତାର ସମ୍ଭବ ।
କ୍ଷଣହେ ପ୍ରଣ ବାଞ୍ଛନ୍ତ । କହ ନହିଁଇ ସେ ଗିର ॥ ୧ ॥
ତୁମ୍ଭରସ ଔଷଧରୁ । ଅବା ଶୃଙ୍ଗାର ରସରୁ ।
ରସାସ୍ୱାଦ ଭିଳାନ୍ତରୁ । କାମ ଜ୍ୱରରୁ ।
ପ୍ରସନ୍ନ ନୋହିଲେ ତୁମ୍ଭେ । ଆନ୍ଥିକ ପ୍ରାଣେ ଜଇବେ ।
ନିଷ୍ଟୁର କର ମୁଏବେ । କହୁଛି ହେ ନାଗର ॥ ୨ ॥

ହେଉ ଅଛୁ ପୁଲକିତ । କରୁଛୁ ଧୀତ୍କାର ବୁନ୍ଦ ।
ବିଳାପ କରି ବହୁତ । ପାଉଛୁ ଶୀତ ।
ଅତି ଶଯ୍ୟାରେ କମ୍ପନ । ହୋଇ ତୁମ୍ଭ ଅଚେତନ ।
ଚନ୍ଦ୍ରାରେ ବିଷାଦ ମନ । କରି ବିକଳ ତାହାର ॥ ୩ ॥
ଲୋଟୁଛୁ କ୍ଷିତି ଉପରେ । ଚେତନା ନାହିଁ ଦେହରେ ।
ନୟନକୁ ବୁଜି ଧୀରେ । ଉଠୁଛୁ ଖରେ ।
ଦୁର୍ବଳ ଲଭି ମୋହକୁ । ହେଉଛୁ ମୂର୍ଚ୍ଛିତକୁ ।
ପୁଣି କରୁଛୁ ନିଦ୍ରାକୁ । ଗୌରହରି କହେ ଏପରି ॥ ୪ ॥



କନ୍ଦର୍ପଜ୍ୱରସଂଜ୍ୱରାତୁରତନୋରାଶ୍ଚର୍ଯ୍ୟମସ୍ୟାଶ୍ଚିରଂ
ଚେତଶ୍ଚନ୍ଦନଚନ୍ଦ୍ରମଃକମଳିନୀଚିନ୍ତାସୁସନ୍ତାମ୍ୟତି ।
କିନ୍ତୁକ୍ଳାନ୍ତିବଶେନଶୀତଳତନୁଂତ୍ୱାମେକମେବପ୍ରିୟଂ
ଧ୍ୟାୟନ୍ତୀରହସିସ୍ଥିତାକଥମପିକ୍ଷୀଣାକ୍ଷଣଂପ୍ରାଣିତି ॥ ୦ ॥

ରାଗ ସାରଙ୍ଗ । ତ୍ରିପୁଟା ତାଳ ॥

ଆହେ ନାଗର ବର ସୁନ୍ଦର । ସନ୍ତାପ ବିରହିଣି ତାର ।
କି ଆଶ୍ଚର୍ଯ୍ୟତର । ହୋଇଛି ଅପାର ।
ଚିରରୁ ସେ ପ୍ରକାର । ଏବେତା ଶ୍ରବଣ କର ॥ ୧ ॥
ଚନ୍ଦ୍ର ଚନ୍ଦନ । ନଳିନ ଗଣ । ସନ୍ତାପ ହର କାରଣ ।
ହେଲେ ସ୍ମରଣ ମାତ୍ର । ଗ୍ଳାନ ହେଉଛି ଗାତ୍ର ।
ଏପରିଯେ କେମନ୍ତ । ବଞ୍ଚିବ ପ୍ରାଣତାର ॥ ୨ ॥
ଚନ୍ଦନାଦିରୁ ଶୀତଳ । ମୁଖ୍ୟ ପ୍ରେମ୍ଣ ଅଟେ ହେ ତୁମ୍ଭର ।
ଏକାନ୍ତରେ ଧ୍ୟାନ । କରୁଛନ୍ତି ଜାଣ ।
ହୋଇ ଅତି କ୍ଷୀଣ । ଦୁର୍ବଳରୁ ଶରୀର ॥ ୩ ॥
କେବଳ ଲାବଣ୍ୟ ମାତ୍ର । ଅଛି ହେ ପ୍ରିୟ ତାହାର ଗାତ୍ର ।
ଧରିଛି କେବଳ । ନିଶ୍ୱାସ କେବଳ ।
କହେ ଦ୍ୱିଜ ଗୌର ।- ହର ଏ କଷ୍ଟସ୍ଥିତିର ॥ ୪ ॥

—o—

କ୍ଷଣମପି ବିରହଃ ପୁରା ନ ସେହେ
ନୟନନିମୀଲନଖିନ୍ନୟା ଯୟା ତେ ।
ଶ୍ୱସିତି କଥମସୌ ରସାଲଶାଖାଂ
ଚିରବିରହେଣ ବିଲୋକ୍ୟ ପୁଷ୍ପିତାଗ୍ରାଂ ॥ ୦ ॥

ରାଗ ନଟ କୁରିଙ୍ଗି । ଆଦି ତାଳ ॥

(କାମଜନା ଜାନା ପ୍ରଭା

କପଟ ଗମଣ ଧର ରହିଛ ସେ କନ୍ଦର୍ପ ॥ ପଦ ॥

ଷଟକ ମନ୍ତ୍ର ଉଚ୍ଚରି । ଭ୍ରମର ଯାର ଅମ୍ବରି ।
ଚଞ୍ଚୁପଟେ ଯେ ଖଡ୍ଗଧର ॥ ୧ ॥
କୋକିଳ ଚମ୍ପକ କଳି । ବିରହି ଜନଙ୍କ ବଳି ।
ମଳୟ ବାତକୁ ପ୍ରସର ॥ ୨ ॥
ରସାଳ ତରୁ କୁସୁମ । ନାଳରେ ସୁମନୋରମ ।
ତାକୁ ପ୍ରତ୍ୟକ୍ଷ ଦେଖି କର ॥ ୩ ॥
ସେ ତ୍ରୁଟିର କର ପ୍ରୀତ । ତର ଧରଣରେ ଅତ ।–
କ୍ଷମ୍ଭରେ ଗଞ୍ଜନ ସର ॥ ୪ ॥
ଏବେ ଶତ୍ରୁ ଧନ୍ୟ କର । ଗମନ କରହେ ହରି ।
କହେ ଧିକ ଗନ୍ଧବହର ॥ ୫ ॥

...*...

ସୁଗନ୍ଧିଂ ଦେବଦେବୈ ଦିବ୍ୟହୃଦ୍ୟତ୍ଵଦଙ୍ଗସଙ୍ଗାମୃତମ ଦ୍ରସାଧ୍ୟଂ ।
ବମୁଲ୍ଲବାଧାଂକ୍ଷୁଦ୍ରୟେନଂଧାମ୍ନୁପେନ୍ଦ୍ରବକ୍ତ୍ରାଦପିଦାରୁଣୋଽପି ॥

ରାଗ ମୁଖାରୀ । ଅଠ ତାଳ ॥

(ଗୋକୁଳର ଓର ଗୋପାଳ । ପ୍ରଭୃ)

ଆହେ ଅଶ୍ୱିନୀ କୁମାର । ଦୁହିଙ୍କର ଠାରୁ ଅତି ସୁନ୍ଦର ॥ପଦ॥
ଚନ୍ଦ୍ରୀ ବଦନଠାରୁ ଅଧିକରେ ଦାରୁଣ ।
ଅଟହେ ବ୍ରଜ କିଶୋର ॥ ୧ ॥

ମନମଥ ବ୍ୟାଧି । ପୀଡ଼ାର ଅବଧି ।
ନାହିଁ ଆଜ ଶ୍ରୀରାଧାଙ୍କର ॥ ୨ ॥
ଭୁଜ ଅଙ୍ଗ ସଙ୍ଗ । ମନ୍ତ୍ରକେ ଅନଙ୍ଗ ।
କରି ମୁକ୍ତ ହେବ ଜ୍ୱର ॥ ୩ ॥
ଅତି ଦୁର୍ଗ ତର ତାହାରୁ ଉଦ୍ଧର ।
କର ସକଳ କେପସାର ॥ ୪ ॥
ଧିକ ଗୌରହରି । କହେ ଆନନ୍ଦହରି ।
ଚରିତକୁ ଏହା ଭାବ ॥ ୫ ॥

—※—

ବୃଷ୍ଣିବ୍ୟାକୁଳଗୋକୁଳାବନବଶାଦୁଦ୍ଧୃତ୍ୟ ଗୋବର୍ଦ୍ଧନଂ ।
ବିଭ୍ରଦ୍ବଲ୍ଲବବଲ୍ଲଭାଭିରଧିକାନନ୍ଦାଚ୍ଚିରଂ ଚୁମ୍ବିତଃ ।
ଦର୍ପେଣୈବ ତଦର୍ପିତାଧରତଟୀସିନ୍ଦୂରମୁଦ୍ରାଙ୍କିତୋ-
ବାହୁର୍ଗୋପତନୋସ୍ତନୋତୁ ଭବତାଂ ଶ୍ରେୟାଂସି କଂସଦ୍ୱିଷଃ ॥
ଇତିଶ୍ରୀ ଭକ୍ତ ସଙ୍ଗୀତ ବଚନଦ ଗୌରହରି କୃତ ଚତୁର୍ଥଃସର୍ଗଃ

—○—

ପଞ୍ଚମ ସର୍ଗଃ ॥

ଅହମିହନିବସାମିଯାହିରାଧାମନୁନୟମଦ୍ୱଚନେନଚାନୟେଥାଃ ।
ଇତିମଧୁରିପୁଣାସଖୀନିୟୁକ୍ତାସ୍ୱୟମିଦମେତ୍ୟପୁନର୍ଜଗାଦରାଧାଂ ॥

ରାଗ ଆନନ୍ଦଭୈରବ । ଆଦି ତାଳ ॥

(ଏରସ୍ମେ । ପ୍ରଥ)

ରାଧାର ବିରହ ବୃତ୍ତାନ୍ତ ଗିର । ଶ୍ରବଣେ ମାତ୍ରେ ମୋ ହର ।
ଦ୍ୱିଗୁଣେ କମ୍ପେ ଶରୀର । ପାଦ ଚଳିବାକୁ ।
ଅଶକ୍ତ ସଖୀରେ । ତା ନକୁଞ୍ଜର ବସିଛୁ ସତ୍ୱରେ ।
ହେ ସଖି ତୁ ଯାଇ । ମୋ ପ୍ରାର୍ଥନା କହି ।
ପ୍ରସନ୍ନ କରାଇ । ଆଣିବୁ ଧରି କରି ॥ ୧ ॥

ଏପରି କହୁ ମଧୁ ଦନ ବାର । ସେ ଧୂର୍ତ୍ତ ପଣ୍ଡିତ ଖର ।
ଆଦରେ ପ୍ରେରିତ କରି । ତାଙ୍କ ଆଜ୍ଞା ପାଇ ।
ପରବେଶ ହୋଇ । ଶ୍ରୀମନ୍ତଙ୍କି ତହୁଁ ।
ଦୁଃଖ ମନରେ ବହୁ । କାନ୍ତ ବିଷୟ ମାନ । କରି ବିସ୍ତାର । ୨ ।
ଗୋବିନ୍ଦ ସୁନ୍ଦର ପଦାରବିନ୍ଦ । ମଧୁରନ୍ଧ ମକରନ୍ଦ ।
ପାନେ ମନସ ମିଳିନ୍ଦ । ରକ୍ଷି ସୁଖ କରି । ଧିଜ ଗୌରହର ।
ମନ୍ଦୁତାପ ହର । ହୃଦୟରେ ପୂରି । ଶ୍ରୀଗୀତଗୋବିନ୍ଦ
କରେ ଭାଷା ବନ୍ଧ । ଗୀତରେ ବଷଦ ପରି ରୁଚିର । ୩ ।



ରାଗ ଅନନ୍ଦ ଭୈରବ । ଅଦ ତାଳ ।

ତବ ବିରହେ ବନମାଳୀ ସଖି ସୀଦତି ରାଧେ । ଧ୍ରୁ । ୦ ।
ବହତି ମଳୟସମୀରେ ମଦନମୁପନିଧାୟ
ସ୍ଫୁଟତି କୁସୁମନିକରେ ବିରହିହୃଦୟଦଳନାୟ ।
ଦହତି ଶିଶିରମୟୂଖେ ମରଣମନୁକରୋତି ।
ପତତି ମଦନବିଶିଖେ ବିଲପତି ବିକଳତରୋଽତି । ୧ ।
ଧ୍ୱନତି ମଧୁପସମୂହେ ଶ୍ରବଣମପି ଦଧାତି ।
ମନସି ବଳିତ ବିରହେ ନିଶି ନିଶି ରୁଜମୁପଯାତି । ୨ ।
ବସତି ବିପିନବିତାନେ ତ୍ୟଜତି ଲଳିତମପି ଧାମ ।
ଲୁଠତି ଧରଣୀଶୟନେ ବହୁ ବିଲପତି ତବ ନାମ । ୩ ।

ଅନଦାନ ସେଟବେଶକୁ ବହୁ । ହେବାରୁ ଅନ୍ତର ।
ତେତିକ ବେଳକୁ । ତୋ ବିରହ ଦୁଃଖରୁ ।
ବସିଛନ୍ତି ସେ କିଶୋର ବର । ପଦ ।
କୁଟିଳ ମାଳିନ୍ୟଶାଳ । ମଳୟଗିରି । ଦରୁ ସଂଭୂତ
ମରୁତ । ମଦନ ସହିତରେ । ଅବାରଣ ଗତିରେ । ବହିବାରୁ
ଅବିରତ । ବିରହଣୀଗଣ । ଚେତନ ବିଦଳନ । କରିବାକୁ

ବାଟରେ । ନରନେ ବନ୍ଧ ପ୍ରମଦନ । ମଦନଙ୍କର ପ୍ରକାଶ ।
ହୁଅନ୍ତେ କେଉଁକଥା କହେ ତହିଁ ସମ୍ଭ୍ରମ । ୧ ॥
ଅତି ଶୀତଳତର । ହେବାର ହିମକର । ଅଖିଳ ଦୁଃଖ
ହର । ହେଲେହେଁ କରଇ ଦହନ ମରଣ ସମାନ ।
ମୋହ ହେବ ଅପାର ସ୍ମରଣର ପତନ । ହୁଅନ୍ତେ । ପୁନଃ
କେତେ ବଚନ ମାନଙ୍କୁ ବହି । ଆହା କପା ନମର । ରହିଲି
ଦେଇ ହର । କେବଳ ଉଚ୍ଚରେ ବେଦନ କରୁଛନ୍ତି ॥ ୨ ॥
ମଧୁକର ନିକର । କରବାର ପୁଷ୍ପର । ଶ୍ରବଣ ମଣ୍ଡଳରେ
ଶ୍ରୀକର । ଯୁଗଳ ଶ୍ରବଣ । ଦୁହିଁରେ ଆଚ୍ଛାଦନ । କରନ୍ତି
ତହିଁଳରେ ବିରହ ଉଦ୍ଦୀପନ । ହେଉଥିବାରୁ ମଦନ । ପ୍ରତି
ପ୍ରତି କ୍ଷଣରେ । ସେହିର ଗାଢ଼ ଦୁଃଖ ଆସେ । ତେବରୁ
ତାଙ୍କ ପ୍ରସ । ଉଭୟରୁ ଦ୍ୱିଗୁଣ ପୀଡ଼ା ଲଭେ କଟିରେ ॥ ୩ ॥
ବିଧୁର ହେବାର । ବିପିନରେ ବର ।- ନଗର ରହିଛନ୍ତି ।
କେବଳ । ଅତି ମନୋହର ଲଳିତ ମଧୁର । ବଚନ
ରହିଛନ୍ତି । ପୁଣିସନ୍ତତରେ । ଧରଣୀ ଶୟନରେ । ବିଶେଷେ
ଲୋଟୁଛନ୍ତି । ଦୁନ୍ଦୁର । ନାମକୁ ଧରି ଧରି । ଆକୁଳରେ
ପୂରି । ବହୁଳ ବେଦନ ମାନଙ୍କ କରୁଛନ୍ତି ॥ ୪ ॥ ମେଚର
ନାଗରୀ । ପାଶେ ସହଚରୀ । କହିଲେ ଯେତେପରି । ଶ୍ରୀହରି
ବିରହବେଦନା । ମାନଙ୍କ ରଚନା । କରି ଗୌରହରି ।
ମନ ତୋଷରେ । ଅନବରତରେ । ଏଗୀତ ଗାନକରି ।
ହେ ଜନେ । ପାତକ ଦୁନ୍ଦୁର ନାଶକର । ସବୁ । ହିନକର
ଉଦୟରେ ତମସ ପରି ॥ ୫ ॥



ପୂର୍ବଂ ଯତ୍ର ସମଂ ତ୍ୱୟା ରତିପତେରାସାଦିତାଃ ସିଦ୍ଧୟ-
ସ୍ତସ୍ମିନ୍ନେବ ନିକୁଞ୍ଜମନ୍ମଥମହାତୀର୍ଥେ ପୁନର୍ମାଧବଃ ।
ଧ୍ୟାୟଂସ୍ତ୍ୱାମନିଶଂ ଜପନ୍ନପି ତବୈବାଳାପମନ୍ତ୍ରାକ୍ଷରଂ ।
ଭୂୟସ୍ତ୍ୱତ୍କୁଚକୁମ୍ଭନିର୍ଭରପରୀରମ୍ଭାମୃତଂ ବାଞ୍ଛତି ॥ ୦ ॥

ରାଗ ଆହାରି । ଆଦି ତାଳ ।
(ନାଗର କି ହେଲ ଗୋ । ପ୍ରତି)

ଘନ ଶ୍ୟାମଗୋ । ଜନ ନୟନ ଅଭିରାମଗୋ । ପଦ ।
ପୂର୍ବେ ଯର୍ଦ୍ଧ ନିବାସ । କରି ସେ ପୀତବାସ ।
ଲଭିଲେ ତୁମ୍ଭର ସଙ୍ଗମ ଗୋ । ୧ ।
ତୁମ୍ଭ କେଳି ରଙ୍ଗରେ । ରତି ପତି ସଙ୍ଗରେ ।
ଲଭିଲେ କାମ ସିଦ୍ଧ ଗ୍ରାମ ଗୋ । ୨ ।
ସେ ମଦନ ତୀର୍ଥରେ । ଏବେ ତୁମ୍ଭ ଅର୍ଥରେ ।
ଜପନ୍ତି ବସି ରାଧାନାମ ଗୋ । ୩ ।
ସଂତତେ ତୁମ୍ଭଠାବ । ହୃଦୟେ ଭାବ ଭାବ ।
ହେଲେକ ଯୋଗିଙ୍କର ଧାମ ଗୋ । ୪ ।
ତୁମ୍ଭ କୁଚ ଆଶ୍ଳେଷ । ଦିବ୍ୟଅମୃତ ରସ ।
କରୁଛନ୍ତି ଅନ୍ତରେ କାମ ଗୋ । ୫ ।
ଦ୍ୱିଜ ଗଉରହରି । ସେରୂପ ଚନ୍ଦ୍ରାକରି ।
କଲି ଏଗୀତକୁ ଉଦ୍ୟମ ଗୋ । ୬ ।

—※—

ରାଗ ଆନନ୍ଦ ଭୈରବ । ଆଦି ତାଳ ।

ରତିସୁଖସାରେ ଗତମଭିସାରେ ମଦନମନୋହରବେଶଂ ।
ନ କୁରୁ ନିତମ୍ବିନି ଗମନବିଲମ୍ବନମନୁସର ତଂ ହୃଦୟେଶଂ ।
ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ ।
ପୀନପୟୋଧରପରିସରମର୍ଦ୍ଦନଚଞ୍ଚଳକରଯୁଗଶାଳୀ । ଧ୍ରୁବ ।
ନାମସମେତଂ କୃତସଙ୍କେତଂ ବାଦୟତେ ମୃଦୁବେଣୁ ।
ବହୁ ମନୁତେ ନନୁ ତେ ତନୁସଙ୍ଗତପବନଚଳିତମପି ରେଣୁ ।
ପତତି ପତତ୍ରେ ବିଚଳିତ ପତ୍ରେ ଶଙ୍କିତଭବଦୁପଯାନଂ ।
ରଚୟତି ଶୟନଂ ସଚକିତନୟନଂ ପଶ୍ୟତି ତବ ପନ୍ଥାନଂ ।
ମୁଖରମଧୀରଂ ତ୍ୟଜ ମଞ୍ଜୀରଂ ରିପୁମିବ କେଳିଷୁ ଲୋଲଂ ।
ଚଲ ସଖି କୁଞ୍ଜଂ ସତିମିରପୁଞ୍ଜଂ ଶୀଲୟ ନୀଲନିଚୋଳଂ । ୨ ।

ଉରସିମୁରାରେ ରୁପହିତହାରେ ଘନଇବ ତରଳବଲାକେ ।
ତଡିଦିବ ପୀତେ ରତିବିପରୀତେ ରାଜସି ସୁକୃତବିପାକେ ।୩।
ବିଗଳିତବସନଂ ପରିହୃତରସନଂ ଘଟୟ ଜଘନମପିଧାନଂ ।
କିଶଲୟଶୟନେ ପଙ୍କଜନୟନେ ନିଧିମିବ ହର୍ଷନିଧାନଂ ।୪।
ହରିରଭିମାନୀ ରଜନିରିଦାନୀମିୟମପି ସ୍ୱାତି ବିରାମଂ ।
କୁରୁ ମମ ବଚନଂ ସତ୍ୱରରଚନଂ ପୂରୟ ମଧୁରିପୁକାମଂ ।୫।

ସଖିରେ ଯମୁନା ତୀରେ ।
ବସିଛନ୍ତି ବନମାଳୀ ଧୀର ସମୀରେ ।
ଗୋପୀ ପୃଥୁଳ ସ୍ତନ । କରିବାରୁ ମର୍ଦ୍ଦନ ।
ହୋଇଛନ୍ତିକର ମିଥୁନ ଚଞ୍ଚଳ ଅତି ସୁନ୍ଦର ॥ ପଦ ॥
ତୁମ୍ଭ ହୃଦୟେଶ୍ୱର । ପାଶକୁ ଗମନ କର ।
ସଂକେତ ସ୍ଥଳରେ ବସିଛନ୍ତି ନାଗର ।
ସଂଯୋଗ ସୁଖସାର । ମଦନ ମନୋହର ।
ସୁବେଶ ହୋଇଛନ୍ତି । ଗତି ବିଳମ୍ବନ କର ॥ ୧ ॥
ଧରି ତୁମ୍ଭ ନାମକୁ । କରିଣ ସଙ୍କେତକୁ ।
ସୁମଧୁରେ ମୁରଲୀ କରି ବାଦନକୁ ।
ତୁମ୍ଭ ଅଙ୍ଗ ସଙ୍ଗତ । ଚଳିତ ବାତ ଧୂଳିତ ।
ମଣୁଛନ୍ତି ବହୁତ । ପବରେ ସଂଭାବନାରେ ॥ ୨ ॥
ପକ୍ଷୀତରୁ ଶିଖରେ । ଆସି ଶୀଘ୍ରେ ବସିବାରେ ।
ପତ୍ର ବିଚଳିତ ହେବାରୁ । ବିଶେଷରେ ।
ତୁମ୍ଭର ଆଗମନ । ଶଙ୍କାକରି ଶୟନ ।
ରଚନ କରଛନ୍ତି । ନୟନେ ଚାହିଁ ପଥରେ ॥ ୩ ॥
ଅବ ପର ମଞ୍ଜୀର । ତେଜନ୍ତରେ ଏତ ଅଧୀର ।
କେଳି ଆବଳରେ ଚଞ୍ଚଳିତ ମୁଖର ।
ଅନ୍ଧକାର ପୁଞ୍ଜରେ । ସହିତ ନିକୁଞ୍ଜରେ ।
ପିନ୍ଧିନୀଳ ନିଚୋଳ ଗମନ କର ଧୀରେ ॥ ୪ ॥
ଗିରିଧାରି ଉପରେ । ସୁରତ ବିପରୀତରେ ।
ବିରାଜିତ ହେବୁଟି ସେହି କାଳରେ ।
ଉରେ ଥିବାରି ବାର । ତରଳ ବକ ନିକର ।
ଘନେ ବିଦ୍ୟୁତର ଶୋଭା ପାଇବୁ ପୁଣ୍ୟଫଳରେ ॥ ୫ ॥

ପଲ୍ଲବ ଶୟନରେ । ପଙ୍କଜାକ୍ଷଙ୍କ ଠାରେ ।
ବସନ ହୀନ ମେଖଳାପର ହୃଦରେ ।
ଜଘନକୁ ଘଞ୍ଚନ ; କରରେ ସଖି ବନ୍ଧନ ।
ହୁଅଇ ନଧି ଅଧୀନ ଯେମନ୍ତ ଦରିଦ୍ରରେ ॥ ୭ ॥
କନ୍ଦର୍ପ ଗଉର ହର ! ସେମାନ ଅଛନ୍ତି କର ।
ଆଦର କରନ୍ତେ ଗୋ ! କଶିପାଉଛୁପର ।
ଧେନ ମୋଚନକୁ । ଶୀଘ୍ର ହୋଇ ବେଶକୁ ।
ଘନଶ୍ୟାମ ମନକୁ । ହରନ୍ତ କର ସଧୀରେ ॥ ୭ ॥



ବିକିରତି ମୁହୁଃ ଶ୍ୱାସାନ୍ଦ୍ୱାସାଃ ପୁରୋ ମୁହୁରୀକ୍ଷତେ
ପ୍ରବିଶତି ମୁହୁଃ କୁଞ୍ଜଂ ଗୁଞ୍ଜନ୍ମୁହୁର୍ବହୁ ତାମ୍ୟତି ।
ରଚୟତି ମୁହୁଃ ଶଯ୍ୟାଂ ପର୍ଯ୍ୟାକୁଳଂ ମୁହୁରୀକ୍ଷ୍ୟତେ
ମଦନକଦନକ୍ଲାନ୍ତଃ କାନ୍ତେ ପ୍ରିୟସ୍ତବ ବର୍ତ୍ତତେ ॥ ୦ ॥

ରାଗ ମଲ୍ଲାର । ଅଷ୍ଟ ତାଳ ॥

ଶୁଣଗୋ ପ୍ରାଣ ସିଡଣି । ତୁମ୍ଭ ପ୍ରିୟ ମୁରଲୀ ପାଣି ॥ ପଦ ॥
ମଦନ କଦନେ ହରି । ବଦନ ମଳିନ କରି ।
ତଦନ କନ୍ଦ ନପାରି । ଶ୍ୱାସ ଛାଡେ ପୁଣି ପୁଣି ॥ ୧ ॥
ଆସିଲେ ମୋର ପାଶକୁ । ଗଲେ ସେ କେଉଁ ଦେଶକୁ ।
ବୋଲି ସେ ପ୍ରତି ଦିଶକୁ । ଗ୍ୟନ୍ତି ଛନ୍ତିରେ ରମଣି ॥ ୨ ॥
କି ଅବା ଅନ୍ୟ ପଥରେ । ଆସିନଦେଖି କୁଞ୍ଜରେ ।
ଲେଉଛନ୍ତି ଗୁଣ ଗୁଣି ॥ ୩ ॥
ଶୁଣି ମଞ୍ଜୀର ସିଞ୍ଜିତ । ଶବ୍ଦ ହୋଇ ହରଷିତ ।
ଶୟନ କରେ ନିମିତ । ତୁମ୍ଭ ଆଗମନ ଜାଣି ॥ ୪ ॥
ନଦେଖିବାରୁ ସେ ତହିଁ । ଅତି ଆକୁଳକୁ ଦହି ।
ପାଦପ ଲତାକୁ ଚୁହିଁ । ରହିଛନ୍ତି ଲଭି ଗ୍ଲାନି ॥ ୫ ॥
ସେ ବୃତ୍ତ ପ୍ରିୟ ବଚନ । ଗଉରହର ରଚନ ।
କର ହରଷରେ ଗାନ । କରେ ମାନସକୁ ଆଣି ॥ ୬ ॥



ଦ୍ୱ୍ୱାନ୍ୟେନ ସମଂ ସମଗ୍ରମଧୁନା ଚଣ୍ଡାଂଶୁରସ୍ତଂ ଗତୋ—
ଗୋବର୍ଦ୍ଧନସ୍ୟମନୋରଥେନଚସମଂପ୍ରାପ୍ତଂତମଃସାନ୍ଦ୍ରତାଂ ।
କୋକାନାଂ କରୁଣସ୍ୱନେନ ସଦୃଶୀ ଦୀର୍ଘା ମଦଭ୍ୟର୍ଥନା
ତନ୍ମୁଗ୍ଧେ ବିଫଳଂ ବିଳମ୍ବନମସୌ ରମ୍ୟୋଽଭିସାରକ୍ଷଣଃ ।୦।

ରାଗ ସାରଙ୍ଗ । ଆଦି ତାଳ ।

ହେ ମୁଗ୍ଧେ ତୋକାର୍ଯ୍ୟ ବୁଝକାଣୁ ଅଗୋ ରାଧେ । ପଦ ।
ସେ ଶ୍ରୀହରିଙ୍କ ସଙ୍ଗେ । ସଙ୍ଗ ହେବା ପ୍ରସଙ୍ଗେ ।
ଯୁକ୍ତ ସମସ୍ତ ଏବେ । ଗମନ କର ତୁ ବେଗେ ॥ ୧ ॥
ପ୍ରଳମ୍ବ କରିବାର । ବିଫଳ ହିନା ତୋର ।
ସୁନ୍ଦର ସନ୍ଧ୍ୟତରେ । ଶେଷହେଲା ଦିବସର ॥ ୨ ॥
ସମଗ୍ରରେ ଦିନେଶ । ହୋଇବାରୁ ଅଦୃଶ୍ୟ ।
ଶ୍ୟାମ ଅଭିଳାଷ ସଙ୍ଗ । ଜାତ ହେଲାନ ତମସ ॥ ୩ ॥
ଚକ୍ରବାକ ଯାକର । କରୁଣ ସ୍ୱନତର ।
କାର ହେଲାନ ମୋର । ଅଭ୍ୟର୍ଥନା ନକର ॥ ୪ ॥
କହେ ଗଉରହରି । ହେବାକୁ ଅଭିସାର ।
କାଳ ଆଉ ଏପର । ନାହିଁ ବୋହିବରେ ଘୋର ॥ ୫ ॥

—୦○୦—

ଅଶ୍ଳେଷାଦନୁଚୁମ୍ବନାଦନୁନଖୋଲ୍ଲେଖାଦନୁସ୍ୱାନ୍ତଜ—
ପ୍ରୋଦ୍‌ବୋଧାଦନୁସଂଭ୍ରମାଦନୁରତାରମ୍ଭାଦନୁପ୍ରୀତୟୋଃ ।
ଅନ୍ୟାର୍ଥଂ ଗତୟୋର୍ଭ୍ରମାନ୍ମିଳିତୟୋଃ ସମ୍ଭାଷଣୈର୍ଜାନତୋ—
ର୍ଦମ୍ପତ୍ୟୋରିହକୋନକୋନତମସିବ୍ରୀଡାବିମିଶ୍ରୋରସଃ ॥ ୦ ॥

ରାଗ ଆହାରି । ଅଦ୍ଧ ତାଳ ।

ଆନ ବିଷୟରେ । ଯାଇ ଭ୍ରମ ବଶରେ ।
ମିଳିଗଲେ ପ୍ରିୟାପ୍ରିୟ ଏକ ପ୍ରଦେଶରେ । ପଦ ।
ସଂଭାଷଣରେ । ଜାଣିଲେ ଦୁହେଁ ଦୁହିଙ୍କ ।
ଏଘୋର ଅନ୍ଧକାରରେ କଣ୍ଠ ନଣାଙ୍କି ॥ ୧ ॥

ଆଲିଙ୍ଗନ ଚୁମ୍ବନ ନଖର ଛେଦନେ ।
ମନମଥକୁ ଜିଣୁ ଭଲ କି ଅନ୍ତରେ ॥ ୩ ॥
ଅତ ସଂଭ୍ରମରେ । ରତି ... ପାନ ।
ବହିଲେ ମୋ ହୃଦୟରେ ଅପୂର୍ବ ... GADAGADA ...
ମଣିକାଞ୍ଚିର ରବରେ ମେଳି ମୋ ଦୃଷ୍ଟିକର ।
ହୋଇଲି ବା କେଉଁ କେଉଁ ରସ ସଂଶ୍ରମ । ୪ ।
ଅଭିକାର ବର୍ଣ୍ଣନାରେ । ଧନ୍ୟ ଶ୍ରୀଗୀରହର କହେ ।
ହରଷରେ ଏପରି ଠିକ ॥ ୫ ॥

···※···

ସଭସୃତକ୍ଳାନ୍ତଂ ବନ୍ୟସ୍ୟନ୍ତ୍ରୀଂ ଦୃଶୌ ଋମିରେ ପଥି
ପ୍ରକ୍ଷତରୁ ମନ୍ଦଂ ସ୍ତ୍ରିତ୍ୱା ମନ୍ଦଂ ପଦାନି ବତନ୍ୱତୀଂ ।
ଜଥମପି ରହଃ ପ୍ରାପ୍ତାମଙ୍ଗୈରନଙ୍ଗତରଙ୍ଗିଭିଃ
ସୁମୁଖି ସୁଭଗଃ ପଶ୍ୟନ୍ ସ ତ୍ୱାମୁପୈତୁ କୃତାର୍ଥତାଂ ॥ ୦ ।

ଗଉ ଆହାର । ଆଦ ତାଳ ॥

ସେ ବର ନାଗର । ପ୍ରଣୟରେ । ଅତ୍ୟନ୍ତ ମଦନ ହର ସଜନ ॥ ପଦ ।
ଚମ ସହୃପ ପଥରେ । ଦେଖିବେକେ । ତୋର ଭୟ ଚଞ୍ଚଳରେ ।
ସେ କାଳେ ଏକ ସଖୀ ସଙ୍ଗରେ । ଅନଙ୍ଗ ରସ ରଙ୍ଗରେ ।
ସହ୍ୱତ ହୋଇ ବୃନ୍ଦ ଥିବୁ ପ୍ରତ ଦଗରେ ॥ ୧ ॥
ପ୍ରତ ତରୁତଳରେ । ବହୁ ବହୁ । ସହରେ ଧୀରେ ଧୀରେ ।
ହରଷେ ପଦ ସ୍ଥଳ । କାମିନୀ । ସଂକେତ କୃଞ୍ଜ ଜାଣି ।
କର ଝଟତ ଗତ । ପ୍ରୀତ ପ୍ରମୋଦରେ ॥ ୨ ॥
କପର ହେଲେ ଦୁଃଖରେ ଆଗୋ ସହୃ । ଏକାନ୍ତ ନକୁଞ୍ଜରେ ସବୁରେ
ତୋତେ ଦେଖି ସୁନ୍ଦର । କିଶୋର ବର ବର ।
ହୁଅନ୍ତୁ ସେ କୃତ କାର୍ଯ୍ୟ ନରନ୍ତର ॥ ୩ ॥
ଏପର ଯେତେ ପରରେ । ବାଣାକାକ୍ଷୀ ଦୂତୀକ କିଶୋରଙ୍କଠାରେ ।
ପ୍ରବୋଧି କହିବାର ବଚନ । ଗଉର ହର ରଚନ ।
କଲି ଏରସକୁ ଗାନ । କରଜନେ ନରନ୍ତରେ ॥ ୪ ॥



ରାଧାମୁଗ୍ଧମୁଖାରବିନ୍ଦମଧୁପସ୍ତ୍ରୈଲୋକ୍ୟମୌଳିସ୍ଥଳୀ
ନେପଥ୍ୟୋଚିତନୀଲରତ୍ନମବନୀଭାରାବ ।ରାନ୍ତକଃ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଜନମନସ୍ତୋଷପ୍ରଦୋଷଶ୍ଚିରଂ
କଂସଧ୍ୱଂସନଧୂମକେତୁ ରବତୁ ତ୍ୱାଂ ଦେବକୀନନ୍ଦନଃ । ୧ ।

ଇତି ଭାଷାସଙ୍ଗୀତ ବିନୋଦ ଗୌରହରି କୃତ ପଞ୍ଚମ ସର୍ଗଃ ।

—※—

ଅଥତାଂଗନ୍ତୁମଶକ୍ତାଂଚରମନୁରକ୍ତାଂଲତାଗୃହେଦୃଷ୍ଟ୍ୱା
ତଚ୍ଚରିତଂଗୋବିନ୍ଦେମନସିଜମନ୍ଦେସଖୀପ୍ରାହ ॥ ୧ ॥

ରାଗ ମଲ୍ଲାର । ଆଦି ତାଳ ॥

ଦେଖି ଏଉତ୍ତାରୁ । ମୁରଲୀ ପାଣିଙ୍କ ।
ପ୍ରିୟସଖୀ କହଇ ଯାଇ ବାଣିଙ୍କ ॥ ପଦ ॥

ଯିବାକୁ ସ୍ଥଳ । ନପାଟରେ ବାଳୀ । କୃଷ ହେବାରୁ ତନୁ କେଶିଙ୍କ ॥ ୧ ॥
ଶର ଜାଳନ୍ତୁ । ଯେ କର ଭେଦରୁ । ବହନ୍ତି ଅନଙ୍ଗର ଶ୍ରେଣୀଙ୍କ ॥ ୨ ॥
ନଲୁଙ୍କେ ରହି । ଦୁଃଖକୁ ବହି । ବୁହଇ ନୟନରୁ ପଣିଙ୍କ ॥ ୩ ॥
କାମରେ ମନ୍ଦ । ହୋଇ ଯୋବନ୍ଦ । ଥିଟଲତ ତାଙ୍କ ଯୋଡ଼ ପାଣିଙ୍କ ॥ ୪ ॥
ଘନରହର । ଶତେ ଶ୍ରୀହର । ବିରହ କୃଶ ମୂର୍ତ୍ତି ଠାଣିଙ୍କ ॥ ୫ ॥

—※※※—

ପଶ୍ୟତି ଦିଶି ଦିଶି ରହସି ଭବନ୍ତଂ ।
ତ୍ୱଦଧରମଧୁରମଧୂନି ପିବନ୍ତଂ ।
ନାଥ ହରେ ସୀଦତି ରାଧା ବାସଗୃହେ । ଧ୍ରୁବ ।
ତ୍ୱଦଭିସରଣରଭସେନ ବଲନ୍ତୀ ।
ପତତି ପଦାନି କିୟନ୍ତି ଚଲନ୍ତୀ ॥ ୧ ।
ମୁହୁରବଲୋକିତମଣ୍ଡନଲୀଳା ।
ମଧୁରିପୁରହମିତି ଭାବନଶୀଳା ॥ ୨ ॥

ତ୍ୱରିତମୁପୈତି ନ କଥମଭିସାରଂ ।
ହରିରିତି ବଦତି ସଖୀମନୁବାରଂ ॥ ୩ ॥
ବହତି ବଣଦବଣକଣଲସ୍ପଳୟା ।
ଜୀବତି ପରମିହ ତବ ରତିକଳୟା ॥ ୪ ॥
ଶ୍ରିୟତି ତମୃତ ଜଳଧରକଳ୍ପଂ ।
ହରିରୁପଗତ ଇତି ତିମିର ମନଳ୍ପଂ ॥ ୫ ॥
ଭବତି ବିଲମ୍ବିନୀ ବିଗଳିତଲଜ୍ଜା ।
ବିଲପତି ରୋଦତି ବାସକସଜ୍ଜା ॥ ୬ ॥
ଶ୍ରୀଜୟଦେବକବେରିଦମୁଦିତଂ ।
ରସିକଜନଂ ତନୁତାମତିମୁଦିତଂ ॥ ୭ ॥

ରାଗ ଆନନ୍ଦ ଭୈରବ । ତ୍ରିପୁଟା ତାଳ ॥

ଆହେ ଆଶ୍ରିତ ଜନ । ଜାଲ ପାଳକ ।
ହେନାଥ ସେ ଶ୍ରୀମତୀ । ଶଙ୍ଖ ଧାରକ ।
ଆସିବ ବୋଲି । ବିବିଧ ଉପହାରକୁ
ଘେନି ନିକୁଞ୍ଜେ ପାଉଛନ୍ତି କେତେ ଦୁଃଖ ॥ ପଦ ॥
ଏକାନ୍ତରେ ସେତ ପ୍ରତ ଦର୍ଗମାନଙ୍କୁ ।
ଅବ ଲୋକନ କରୁଛନ୍ତି ତୁମ୍ଭଙ୍କୁ ।
ଶ୍ରୀରାଧା ଅଧର ମଧୁର ପିୟୂଷକୁ ।
ପାନ କରଯେ ତୁମ୍ଭେ ବହୁ ଅନୁରାଗକୁ ॥ ୧ ॥
ତୁମ୍ଭ ଅଭି ସରଣ କରିବା ଉତ୍ସବରେ ।
ଶୀଘ୍ରେ ଉଠି ମୋର ପାଣିକ ଧରେ ।
ପଦ୍ଦଣ୍ଡ କେତେ ଯାଇ ହୃସ୍ପନ୍ଦିତଭବରେ ।
ପଡ଼ୁ ଅଛନ୍ତି ପୁଣି ଧରଣି ଉପରେ ॥ ୨ ॥
ବିରହ ତାପରେ ମଣି ଭୂଷଣ ଗଣ ।
ତେଜିଜ ମୃଣାଳ ବଳୟାକରେ କଙ୍କଣ ଜାଣ ।
ରହନ୍ତୁ ଦେଖିବ ବୋଲି ଅରେ ଶ୍ରୀଲପନ ।
କେବଳ ପ୍ରାଣ ଅଛୁ ତବ ସ୍ନେହରେ ॥ ୩ ॥

ପୁଣି ପୁଣି ପ୍ରତି ଭୂଷଣ ଗଣକୁ ଦେଖୁଛନ୍ତି ।
କଣ୍ଠପୂର୍ବ ତନମଳକୁ ।
ମଧୁରପୂ ମ ଏମନ୍ତ ବୋଲି ଚିତ୍ତକୁ ।
ଭାବନା କରୁଛନ୍ତି ଅଭେଦ ରୂପକୁ ॥ ୪ ॥
ସଖୀକି ପଚାରନ୍ତି କାହିଁକି ଏପରି ।
ମୋ ଠାରେ କହିତରେ କରୁଣା କରି ।
ଅଭିସାରକୁ ନକରନ୍ତୁ ଗୋ ସହଚରୀ ।
ଥରକୁ ଥର ମୋହ ଗିରକୁ କହି ହରି ॥ ୫ ॥
ଆସିଲେ ଶ୍ୟାମ ବୋଲି ଉତ୍ସୁକ ଭାବରେ ।
ଜଳଧର ସମାନ ତଡ଼ିରକୁ ଭ୍ରମରେ ।
ଆଶ୍ଳେଷ କରୁଛନ୍ତି ଯୁଗଳ ଭୁଜରେ ।
ଚନ୍ଦନକୁ ଦଅନ୍ତି ସତମଣି ଚିତ୍ତରେ ॥ ୬ ॥
ତୁମ୍ଭର ଆଗମନ ବିଳମ୍ବ ହୋଇବାରୁ ।
ସ୍ତ୍ରୀତ ହେଲାକ ଲଜ ଆଜ ସେ ରମ୍ଭୋରୁ ।
ହେଜକୁ ସଜ କର ମନସିଜ ଦୁଃଖରୁ ।
ସ୍ୱେଦନ ବିଳାପ କରୁଛନ୍ତି ହୋଇ ସ୍ୱାରୁ ॥ ୭ ॥
ଯାହାଙ୍କୁ ସଖୀ କହିଲେ ଏମନ୍ତ ଗିର ।
ତାହାଙ୍କ ଶ୍ରୀଚରଣ ଯୁଗଳ ନିରନ୍ତର ।
ଚିତ୍ତ ହୃଦସ୍ଥ କମଳରେ ଦେଇ ଗଉର ।
ହରି କହେ ବାସକ ସଜ୍ଜିକା ରସସାର ॥ ୮ ॥

—...—

ବିପୁଲ ପୁଲକ ପାଳିଃ ସ୍ଫୀତ ଶୀତ୍କାର ମନ୍ତ—
ର୍ଜନିତ ଜଡିମ କାକୁ ବ୍ୟାକୁଳଂ ବ୍ୟାହରନ୍ତୀ ।
ତବ କିତବ ବିଧାୟାମନ୍ଦକନ୍ଦର୍ପଚିନ୍ତାଂ
ରସଜଳଧିନିମଗ୍ନା ଧ୍ୟାନଲଗ୍ନା ମୃଗାକ୍ଷୀ । ୦ ।

ରାଗ ସାବେରୀ । ଅଟ ତାଳ ।

(ଚନ୍ଦ୍ର ନଣାରେ । ପ୍ରଭୃ)
ହେ ଧୂର୍ତ୍ତ ବର । ତୁମ୍ଭ ବିରହରେ ଖିନ୍ନ ହେଲାଣି ଶରୀର ॥ ୦ ॥

ତାଙ୍କୁ ଗହନ ମଧ୍ୟକୁ ଆଣି । ନିଶ୍ଚିନ୍ତରେ ରହିଲ କମଣି ।
ଏବେହେଁରୁ ତୁମ୍ଭେ ଶଠଶେଖରୀ ।
ଶିରୋମଣି ଅଟ କି ନ ଅଟ ତାବସ୍ତୁର ॥ ୧ ॥

ପ୍ରେମ ସର୍ବସ୍ୱଭୂତ ତାଙ୍କର । ତୁମ୍ଭେ ସିନା ଆହେ ବଂଶୀଧର ।
ଅମନ୍ଦ କାମ ଚିନ୍ତାକୁ ତୁମ୍ଭର ।
ବିଧାନତ ହୋଇଛନ୍ତି ସେ ରାଧା ହୃଦୟର ॥ ୨ ॥

କରି ଅଛି ମୁଁ କେତେ ପାତକ । ହେବି କପଟରେ ଆଶ୍ୱାସକ ।
କେତେ ଲଭିଲେନି ସ୍ମର ଦୁଃଖ ।
ବୋଲି ଏପରି ହୋଇଛନ୍ତି ଧ୍ୟାନ ଲଗ୍ନପର ॥ ୩ ॥

ଯେତେ ଅଛନ୍ତି ଇନ୍ଦ୍ରିୟଗଣ । ତୁମ୍ଭଠାରେ କରି ସମର୍ପଣ ।
ଅଭିଳାଷ ସମୁଦ୍ରେ ମଗ୍ନେଣ ।
ରହିଛନ୍ତି କେହ୍ନେ ବୋଲି ଉଦ୍ଧାର ॥ ୪ ॥

ପ୍ରତି ଅଙ୍ଗେ ପୁଲକ ସଞ୍ଚାର । ପୁଣି ପୂର୍ଣ୍ଣ ହୋଇଛନ୍ତି ସୀତ୍କାର ।
କହେ ଗଭୀର ହରି ଅପାର ।
ବାଧା ପ୍ରବଳ ହୋଇଛନ୍ତି ନମନେ ରାଧାର ॥ ୫ ॥

—•○•—

ଅଙ୍ଗେଷ୍ୱାଭରଣଂ କରୋତି ବହୁଶଃ ପତ୍ରେଽପି ସଂଚାରିଣି
ପ୍ରାପ୍ତଂ ତ୍ୱାଂ ପରିଶଙ୍କତେ ବିତନୁତେ ଶଯ୍ୟାଂ ଚିରଂ ଧ୍ୟାୟତି ।
ଇତ୍ୟାକଳ୍ପବିକଳ୍ପତଳ୍ପରଚନାସଂକଳ୍ପଲୀଳାଶତ—
ବ୍ୟାସକ୍ତାପି ବିନା ତ୍ୱୟା ବରତନୁର୍ନୈଷା ନିଶାଂ ନେଷ୍ୟତି ।୦।

ରାଗ ଆହାରି । ଆଦି ତାଳ ॥

ତୁମ୍ଭ ବିହୁନେ ଆହେ ଶ୍ରୀହରି ।
ଘୋର ନିଶାକୁ ନେବ କିହ୍ନ କପରି ॥ ପଦ ॥

ବହୁତ ଆଭରଣ । ଅଙ୍ଗେ କରି ଭରଣ ।
ପତ୍ରରେ ସଂସ୍ଫୁରଣ । କରେ ବର କଶୋରୀ ॥ ୧ ॥

କରଇ ଚିର ଧ୍ୟାନ । ସଜାଡଇ ଶୟନ ।
ତୁମ୍ଭର ଆଗମନ ହୃଦୟରେ ବିସ୍ତରି ॥ ୨ ॥

ଏପରିରେ ଆକଳ୍ପ । ରୁମ୍ଣସଙ୍ଗ ଉକଳ୍ପ ।
କେଳି ଶୈଳ ସଂକଳ୍ପ ଧରି ଯେ ନାଗରୀ ॥ ୩ ॥
ଗଉରହରି କହେ । ତାଙ୍କୁ ବଢ଼ାଇ ସ୍ନେହେ ।
ଏବେ ଅତି ବିରହେ ନଦଅ ପାରି ॥ ୪ ॥

—॰❀॰—

କଂ ବୃନ୍ଦାମ୍ୟପି କୃଷ୍ଣଭୋଗିଭବନେ ଖ୍ୟାଶ୍ରୀରଭୂମିବୁହେ ।
ଭ୍ରାତର୍ଯୀହୁ ନ ଦୃଷ୍ଟିଗୋଚରମିତଃ ସାନନ୍ଦନନ୍ଦାସ୍ପଦଂ ।
ଏଥାସ୍ମା ବଚନଂ ତଦଧ୍ୱଗମୁଖାନ୍ନନ୍ଦାତ୍ମଜେ ଗୋପତୋ-
ଗୋବିନ୍ଦସ୍ୟ ଜୟନ୍ତି ମାଯୁମତଥିପ୍ରାଣସ୍ତ୍ୟଗର୍ଭା ଗିରଃ ॥ ୦ ॥

ଇତଶ୍ରୀ ଭାଷା ସଙ୍ଗୀତ ବିନୋଦ ଗୌରହରି କୃତ ଷଷ୍ଠ ସର୍ଗଃ

—※—

## ସପ୍ତମ ସର୍ଗଃ ॥

ପଶ୍ଚାନ୍ତରେ ଚ କ୍ଲଣ୍ଟାକୁଳବର୍ମ୍ମ ପାତ—
ସଂଜାତପାତକ ଇବ ସ୍ଫୁଟଲାଞ୍ଛନଶ୍ରୀଃ ।
ବୃନ୍ଦାବନାନ୍ତରମଦୀପୟଦଂଶୁଜାଲୈ-
ର୍ଦ୍ଦିକ୍ସୁନ୍ଦରୀବଦନଚନ୍ଦନବିନ୍ଦୁରିନ୍ଦୁଃ ॥ ୦ ॥

ରାଗ ଭୈରବ । ଅଟ ତାଳ ॥

ସଖୀ ଶ୍ୟାମସୁନ୍ଦରଙ୍କୁ । ଆଣି ମାରେ ଉପାସ୍ତୁକୁ ।
କହେ ବନ୍ଧୁ ହରଷକୁ ॥ ୧ ॥
ଏସମସ୍ତେ ହିମକର । ପ୍ରକାଶିକର ନିକର ।
ପ୍ରଦୀପରେ ଦୀପ୍ତିକର । କଲଶ୍ରୀବୃନ୍ଦାବନକୁ ॥ ୨ ॥
ଦିଗ ସୁନ୍ଦରୀ ବଦନ । ଚନ୍ଦନ ବିନ୍ଦୁ ସମାନ ।
ବହିଲା ଶଶ ଲାଞ୍ଛନ । ଅତି ସୁନ୍ଦର ଶୋଭାକୁ ॥ ୩ ॥
କୁଳଟା କୁଳରପଥ । କରିବାରୁ ନିପାତତ ।
ସେପାତକ ଜାଳ ଜାତ । ହେଲା ଲାଞ୍ଛନ ତାହାକୁ ॥୪॥

